# ନୂଆ ଲୋକକଥା


ଲେଖକ :

ଶ୍ରୀ ଗୌରଚନ୍ଦ୍ର ପଣ୍ଡା

ଶ୍ରୀ ଘାସିରାମ ପଟେଲ






ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରଷଦ

ଭୁବନେଶ୍ୱର

Adult/Nonformal Education Literature

UNICEF AIDED PROJECT No. 3 (DACEP)

(Experimental Edition)

Title of the Booklet—Oriya in Roman Script : Nua-Lokakatha

English Version : Modified Folktales

Author : Sri Gaura Chandra Panda—Teacher, T.T.I. Paralakhemundi

Sri Ghasiram Patel—Headmaster, Vedabahal U.P. School, Sundergarh

Reviewer : Sri Paramananda Mishra, Counsellor, SCERT, Orissa

Sri Mayadhara Mishra, S.I. of Schools, Dhenkanal

Sri Krushna Chandra Mishra, Headmaster, U.G.M.E. School Chakeisiani

Sri Anataryami Rath ,, Haldia L.P. School

Sri Naresh Chandra Panda ,, S. Routpur U.P. School

Sri Jagabandhu Baral ,, Govindapur U.P. School

Sri Śatchidananda Kar ,, Mangalpur U.P. School

Published by

Director,
State Council of Educational Research and Training,
Orissa, Bhubaneswar



SPCDC Publication No. 127/112/61

Year of Publication : 1982

3000 Copies

Printed by : Satyabrata Press, Pithapur, Cuttack-1

The paper including cover paper used in this publication has been received as gift from the UNICEF.

# ସୂଚୀପତ୍ର

# ସତରଙ୍କ ଘଣ୍ଟି



ବରୁଣେଇ ପାହାଡ଼ ତଳ । ଗାଁ ମୁଣ୍ଡରେ ଝଙ୍କା ବରଗଛଟିଏ । ବହୁତ ପରୁଣା । ଶୁଆ ସାରୀ, କାଉ, ବଗ, ବାଦୁଡ଼ି, ମାଙ୍କଡ଼ ଏକାଠି ଗଛରେ ବସା କରି ରହିଥାନ୍ତି । କେହି କାହାର ହାନି କରୁନଥିଲେ, କି ମନ୍ଦ ପାଞ୍ଚୁ ନ ଥାନ୍ତି । ପଶୁପକ୍ଷୀଙ୍କ ଭିତରେ ଭାବ ବେଶ୍ ଜମି ଯାଇଥାଏ ।

ବରଗଛ ପାଖରେ ରାମ ସାହୁର ତେଲ ଘଣା । ଘଣାକୁ ବଳଦଟିଏ ଯୋଚ୍ଚା । ବଳଦ ବେକରେ ଘଣ୍ଟି । ଘଣ୍ଟିଟି ଟିଣିଟିଣି ବାଜୁଥିବା ଯାଏଁ ଜାଣିବ, ବଳଦଟି ଠିକ୍ କାମ କରି ଚାଲିଛି । ତେଲିର ସେଠାରେ ଦେଖା ନାହିଁ ।

ଦିନେ ବାଜପୁରର ପଣ୍ଡିତ ଅନାମ ମିଶ୍ରେ, ସେ ବାଟେ ଯାଉଥିଲେ । ତେଲି ନ ଥାଇ ବଳଦ ଘଣାରେ ତେଲ ପେଡୁଥିବା ଦେଖି, ସେ ଚାବୁଡେଇ ଗଲେ । ଇଚ୍ଛା ହେଲା—ତେଲିକୁ ପଚାରିବେ । ମଣିଷ ନ ଥାଇ, ବଳଦ କିପରି କାମ କରି ଚାଲିଛି ।

ମଣିଷ ତ ଅମଣିଷ ହୋଇଗଲା । କିଏ ଠିକ୍ ରୂପେତ କରମ କରୁନାହାନ୍ତି । ସମାଜରେ ଶୃଙ୍ଖଳା, ନୀତି, ନିୟମ କିଛି ନାହିଁ । ବଳଦ ପଶୁ ହେଲେ ମଧ୍ୟ ଠିକ୍ କାମ କରି ଚାଲିଛି । ସେ ଠକୁନି କାହିଁକି ?

କିଛିଦିନ ପରେ ତେଲି ପୋଖରୀରେ ଗାଧୋଉଥିଲା । ପଣ୍ଡିତେ ତେଲିଠାରୁ କଥା ବୁଝିନେବାକୁ ମଉକା ପାଇଗଲେ । ଆପଣେ, ତେଲିକୁ ବିଷୟଟି ପଚାରିଲେ ।

ସାହୁ ମହାଜନ ପଣ୍ଡିତଙ୍କୁ ଓଲଗି ହୋଇ କହିଲା, "ଆଜ୍ଞା ! ଶୁଣିପାରୁନାହାନ୍ତି କି ବଳଦ ବେକରେ ଘଣ୍ଟି ଶବଦ । ଯେତେ ସମୟ ଘଣ୍ଟି ବାଜୁଥିବ ଜାଣିବେ—ବଳଦ ତା କାମରେ ହେଳା କରୁନି । କାନପାରି ଶୁଣୁଥିଲେ ହେଲା । ପାଞ୍ଚଣ ବାଡ଼ିରେ ପିଟି ପିଟି ବଳଦକୁ, କିପରି ଅନବରତ କାମ କରିବାକୁ ହେବ ଶିଖେଇଛି ।"

ମିଶ୍ର ଆପଣେ ତ ସାଧାରଣ ଲୋକ ନୁହନ୍ତି । ଜଣେ ଜଣାଶୁଣା ପଣ୍ଡିତ । ଆଗତ ଭବିଷ୍ୟତ ଭୂତ ସବୁ ତାଙ୍କୁ ମାଲୁମ୍ । ସେ ଭାବିଲେ—ତାହେଲେ, ଘଣ୍ଟିଟି ହେଲା ମୂଳ । ସେତିକିରେ ତାଙ୍କ ମନ ମାନିଲାନି । ତେଲିକୁ ପଚାରିଲେ—" ସାହୁ ! ଯଦି ବଳଦ କେବଳ ମୁଣ୍ଡ ହଲାଇ ଘଣ୍ଟି ଶବଦ କରୁଥିବ, କିନ୍ତୁ ଚାଲୁ ନ ଥିବ ?"

ସାଙ୍ଗୁ ହସି ହସି କହିଲା—"ଅବଧାନେ ! ବଳଦ ତ ବଳଦ । ସେ ତ ତୁମ ଆମ ପରି ପୁରାଣ ଶାସ୍ତର ପଢ଼ିନି । ଏ ଗୁମର ଜାଣିବ କାହିଁ । ମାଡ଼କୁ ପରା ମହାଦେବ ଡରନ୍ତି । ଆଉ ଛାର ବଳଦ ।"

ପଣ୍ଡିତଙ୍କ ମନ ତଥାପି ମାନିଲାନି । ତେଲିର ଉପାୟ ଏ ଗଣତନ୍ତ୍ର ଯୁଗରେ କାମ ଦେବନି ପରା ।

ଦଇବାତେ, ଦିନେ ପଣ୍ଡିତେ ଖରାବେଳଟାରେ ବରଗଛ ଛାଇରେ ଗାମୁଛା ପାରି ବିଶ୍ରାମ ନେଉଥାନ୍ତି । ଏତିକବେଳେ ଗଛରେ ବସା କରିଥିବା ପଶୁ ପକ୍ଷୀମାନେ ଉପହାସ କରି ନିଜ ନିଜ ଭିତରେ କଥାଭାଷା ହେବାକୁ ଲାଗିଲେ ।

ଶୁଆ ସାରୀକୁ କହିଲା—"ଶୁଣୁଚୁ—ଏ ଯୁଗରେ ଅବଧାନେ ଇସ୍କୁଲକୁ ଯିବାରେ ହେଲା ନାହିଁ । ହେଲେ କ'ଣ ହେବ । ପିଲାଙ୍କୁ ପାଠ ପଢ଼ା ହେଉନି । ତେଣୁ ପଣ୍ଡିତଙ୍କ ସନ୍ଦେହ ଠିକ୍ ।"

ସାରୀ କହିଲା—"ହଁ ଲୋ ଅପା ! ପାଉଣା ନ ପାଇଲେ ପରା ବାବୁମାନେ ଅଫିସ ଯାଇ ଫାଇଲର ଫିତା ଫିଟଉ ନାହାନ୍ତି । କାମ ହେବ କେମିତି ? ପଣ୍ଡିତଙ୍କ ଅନୁମାନ ଠିକ୍ ।"

ବାଦୁଡ଼ି ଡେଣା ଫଡ଼ଫଡ଼ କରି କହିଲା—" ତୁମେମାନେ ଠିକ୍ କହୁଛ । ମୋତେ ତ ଦିନରେ ଦିଶୁନି । କିନ୍ତୁ ରାତିରେ ପୁଲିସର ପହରା ଓ ଚୋରଧରା, ମୁଁ ତ ଭଲ ଭାବରେ ଦେଖିପାରୁଛି ।"

କପି କହିଲା—"ମୋଠୁ ଶୁଣ । ଚାଉଳରେ ଗୋଡ଼ି, ଖାଇବା ଭାତରେ ଚୁନ ମିଶା ହେଉଛି । ବେପାରିମାନେ ପରା ମଣିଷର ଆୟୁ କମେଇ ଦେଉଛନ୍ତି । ଥରେ ପରା ଚଣା ବୋଲି ରଙ୍ଗଗୋଡ଼ି ଚୋବାଇ ମୋର ଦୁଇଟି ଦାନ୍ତ ଭାଙ୍ଗିଗଲା ।"

ଏତକ୍କବେଳେ ବଛର କାଉ କା-କା କରି ଆରମ୍ଭ କଲା—"ମଣିଷ କଥା କ'ଣ ଶୁଣିବ ? ନିଜ ସୁଖ ପାଇଁ ପର ଗଣ୍ଡି ଚପୁଚି । ଆମେ ତ କେତେ ଜାତର ପଶୁପକ୍ଷୀ ଏକାଠି ସୁଖରେ ମିଳିମିଶି ରହୁଛେ । ଆଉ ମଣିଷ—ଛି ଛି··· । ଜାତ ନା'ରେ ମରାମାରି । ଧରମ ନା'ରେ ହଣାକଟା । ଭୋଟ ପାଇଁ ଧାଁ ଧପଡ—ପାଇଗଲେ ନାହିଁରେ ତେଲ ମାଖି ଶୋଇପଡ଼ । ଲାଞ୍ଚ ମିଛ, ନୀତି ଅନୀତି—କିଛି ସେ ସମାଜରେ ବାଛବିଚାର ନାହିଁ ।

କୁକୁରଟିଏ କେଉଁଠି ଥିଲା କେଜାଣି—ଝାଲନାଲରେ ସଁ-ସାଁ, ନସରପସର ହୋଇ ଗଛ ତଳକୁ ଆସି ପହଞ୍ଚିଲା । ଟିକିଏ ଉପରକୁ ଅନାଇ ଦେଲା । ହାତେ ଲମ୍ବର ଜିଭଟିକୁ ଟିକେ ଗୁଡ଼ି ଦେଲା ।

ବର ଓହଳକୁ ଲକ୍ଷ୍ୟ କରି ଠିଆ ଠିଆ ନିଜ ସୁବିଧା କରିନେଲା । ଅଳପ ପାଖ ହୋଇଥିଲେ, ବିଚାରା ପଣ୍ଡିତଙ୍କୁ ପଇତା ବଦଳାଇବାକୁ ପଡ଼ିଥାନ୍ତା । ତା'ର ଆଚରଣ ଦେଖି ପକ୍ଷୀମାନେ ରାଗରେ ଗରଗର, ତମତମ ହୋଇ ଚଲେଇଲେ ।

ଶୁଆ କହିଲା, "ଅସିଲେ ଗୁଣସାଗର । ଟାଉଟରିଆ । ଆରେ—ଆମ କତରେ ତୋର କି କାମ । ଯା—ଯା, ଅଇଁଠା ପତର ଗୁଡ଼ିବୁ ।"

ବିଚାରା କୁକୁର ବଡ଼ ଅଡୁଆରେ ପଡ଼ିଲା ।

ସେ କପିକୁ ଦେଖି କହିଲା—"ବନ୍ଧୁ ! ତୋର ପ୍ରିୟବାନ୍ଧବୀ ପରୀକ୍ଷା ହଲରେ ବ୍ଲାଉଜ ଭିତରୁ କପି ଆଣିବାବେଳେ, ହାତରୁ ଖସି ତଳେ ପଡ଼ିଗଲା । ଗରୁଜୀ ମହାଶୟ ନିରେଖି ଚାହିଁ, କପିତକ ଗୋଟେଇଲେ । ହେଲେ—ମୋ ଭୁକା-କାମୁଡ଼ାକୁ ଡରି ସେତକ ଫେରାଇ ଦେଲେ । ତୋତେ, ଏ ଶୁଭ ବାରତାଟି ଜଣାଇବା ପାଇଁ ଦଉଡ଼ି ଆସିଛି । ମୋ ପାଉଣାଟି ମିଳିଯିବା କଥା ।"

ଏତକବେଳେ କୁଆଟିଏ ଉଡ଼ି ଆସି, ଗଛ ଡାଳରେ ବସି କହିଲା—"ଆଜି ସକାଳେ ଫେରିବା ବାଟରେ ଦେଖିଲି, ମଠ କୂଅରେ ବାଳୁତ ବିଧବାର ଶବ ଭାସୁଛି ।"

ବୁଢ଼ିଆ ସାରୀ କାଉର ସନ୍ଦେହ ମୋଚନ କରି କହିଲା—"ହଁ ବା, ମୁଁ ଜାଣିଛି । ମଠକୁ ନୂଆ ମାଡାର୍ଜୀଟିଏ ଆସିବା ଦିନୁ ଖଟ ଖାଟ ଲାଗିଥିଲା ।"

ଗଛରେ ବଗଟିଏ ରହିଥିଲା । ତାକୁ ଅନ୍ୟମାନେ ଏକଘରିକିଆ କରି ରଖିଥିଲେ । ସେ ଚୁପଚାପ୍ ସବୁ ଶୁଣୁଥିଲା । ବେକ ସଳଖି, ଡେଣା ଝାଡ଼ି କହିଲା—"ମୋର ଭାଇ ଓ ଭଉଣୀମାନେ ! ପର ନିନ୍ଦାରେ ପର ମନ୍ଦରେ ଆମ ଦିନ ଯାଉଚି । ମଣିଷ କଥା କାହିଁକି, ଆମ ରଜା ଗରୁଡ଼ କଥା ବିଚାର କର । ଆମେ ତାକୁ ଭଲ ବୋଲି, ରଜା କଲେ । ସେ ବିଷ୍ଣୁଙ୍କର ପି.ଏ. ହେଲା । ଭଲା—ସେ ଆମ କଥା କିଆଁ ଶୁଣିବ ? ତଳଲୋକଙ୍କ ଗୁହାରି ଶୁଣିବାକୁ ତାକୁ କୁଆଡ଼େ ବେଳ ନାହିଁ । ତରି ନାହିଁ ।

ଗରୁଡ଼ର ସବୁବେଳେ ଚିନ୍ତା—ବିଷ୍ଣୁ ଦେବଲୋକରେ, ନାଗଲୋକରେ, ନରଲୋକରେ କିପରି, କେଉଁଠି, କେତେବେଳେ ସଭାରେ ଯୋଗ ଦେବେ । ନାଚ ଦେଖିବେ । ଗୀତ ଶୁଣିବେ । କେଉଁ ଉଆସରେ ରହିବେ । କ'ଣ ଖାଇବେ । କ'ଣ ପିଇବେ । ପର ଉପକାର କଥା ବୁଝିବାକୁ ବେଳ କାହିଁ ।

ତେଣୁ ବାନ୍ଧବୀଗଣ ! ମୋ ଅତୀତକୁ ଭୁଲିଯାଅ । ମୋତେ କ୍ଷମାକର । ଅପରାଧ ମାର୍ଜନା କର । ମୁଁ ଲୋକତନ୍ତ୍ରରେ ବିଶ୍ୱାସ କରେ । ମୋ ବେକ ବଡ଼ । ମୋ ଗୋଡ଼ ଲମ୍ବା । ମୋ ଅଣ୍ଟ ଗୋଜିଆ । ମୋତେ ଏଥର ଭୋଟ ଦିଅ । ମୁଁ ରଜା ହେଲେ ଜବାବ ଦେଉଛି—ଦଳ ବଦଳ କରିବି ନାହିଁ । ତୁମ୍ଭମାନଙ୍କର ବହୁତ ଉପକାର ହେବ । ନଚେତ୍ ମୁଁ ଅସନ୍ତୁଷ୍ଟ ଦଳରେ ମିଶିଯିବି । କେହି ନ ମିଳିଲେ, ପେଚା ବେକରେ ଆମେ ମାଳ ଗଳେଇ ରଜା କରିଦେବୁ । ତା'କୁ ତ ଦିନବେଳେ ଦିଶେନା । ତେଣୁ ଦିନରେ ଚାଷ ହେଉଥିବା ଦେଶୀ, ବିଦେଶୀ ମାଛ ପୋଖରୀ ସମ୍ଭାଳିବା, ମୋ ପକ୍ଷରେ ସହଜ ହେବ । ମୁଁ ମାଛବିଭାଗ ପାଇଁ ଶପଥ ପାଠ କରିବି । ପଙ୍କ କାଦୁଅକୁ ନ ଯାଇ, ଗୋଡ଼ହାତ ନ ଧୋଇ, ମୋ କାମ ସୁରୁଖୁରୁରେ କରି ଚାଲିବି ।"

ଅନ୍ୟମାନେ ଏକଥା ଶୁଣି କରି କରି ହସୁଥିଲେ ।

ଏତକବେଳେ ପଣ୍ଡିତଙ୍କ ଚେତା ପଶିଲା । ସେ ଧଡ଼ପଡ଼ ହୋଇ ଉଠି ବସିଲେ । ସପନରେ, ସତେ ଯେମିତ ପଶୁପକ୍ଷୀମାନେ ତାଙ୍କ ସନ୍ଦେହମୋଚନ କଲେ । ତାଙ୍କ କଥାଭାଷାର ଭିତର ମରମ ସମଝି ଗଲେ । ପଛକୁ ଫେରି ନ ଚାହିଁ ଘରମୁହାଁ ହେଲେ । ଗଲାବେଳେ ପାଗଳ ପରି, ପଣ୍ଡିତେ ଗୁଣୁଗୁଣୁ ଗାଉଥିଲେ ।

କହିବ ନୁହଁଇ ଭାରତୀରେ,
କଳିଯୁଗ କଥା ସଇଲାରେ ।
କହିଲେ କୁଳ କୁଟୁମ୍ବକୁ ଲାଜ,
ନ କହିଲେ ହେବ କୋକେଇ ସଜ ।
କଥାର ଭିତର ଗୁମର ଟାଣ,
ଲୋଡା ଏବେ ଏକ ମୋଟା ପାଞ୍ଚଣ ।

ସେହି ବରଗଛରେ ଫାଶି ପାଇ ଆଶ୍ରୟ ନେଇଥିବା ଜମ୍ଭୀ ରାଜଗୁରୁଙ୍କର ଆତ୍ମା ବିକଟାଳ ହସ ହସୁଥିଲା ।

---

# ସାଧବ ବୋହୂ



[ କଳିଙ୍ଗର ସାତ ସାଧବ । ଅତି ଅଲିଅଳ ଭଉଣୀ ତଅପୋଇ । ସାଧବେ ଗଲେ କାହିଁ ଅଜଣା ରାଇଜ । କରିବେ ବଣିଜ । ସାତସମୁଦର ତେର ନଈ ପାର ହୋଇ, ବୋଇତରେ ବୋଝେଇ, ସୁନା-ରୂପା, ହୀରା-ନୀଳା, ମୋତି ମାଣିକ ଆଣିବେ ବୋହି । ଭାଇମାନେ ଚାଲିଗଲେ ଯେ, ନଣନ୍ଦିକୁ ଛାଡ଼ି, ଛଅ ଭାଉଜ ମେଳ ହେଲେ । ଗେହ୍ଲା ନଣନ୍ଦକୁ ଯାତନା ଦେଲେ । କୂଟ କଲେ । ହିଂସାରେ ଜଳିପୋଡ଼ି ଗଲେ । ତଅପୋଇ ଆଖିରୁ ଲୁହ ଝରିଲା । ପାଟି ନ ଫିଟିଲା । କେତେ

ସହିଲା । ବାହୁନି ହେଲା । ଭାଇଏ ଲେଉଟିଲେ । ଛଅ ଭାଉଜ କଣ୍ଟା ନାକରେ କାନ ଯୋଡ଼ାଇଲେ । କଥାଟି ଏତିକି । ଫୁଲ ଫୁଟିଲା କେତକୀ । ସେ କେତକୀ ଦେବତାଙ୍କୁ ଲାଗି ହେଲା । ଛଡ଼ା-କେତକୀ, ତଅପୋଇ ଗର୍ଭରେ ମଣ୍ଡିଲା । ନିଦ୍ରାଗଲା—ସପନେ କହିଲା—

"—ହେ ଇନ୍ଦ୍ର, ସୂର୍ଯ୍ୟ, ଚନ୍ଦ୍ର,
ଆହେ ଅଷ୍ଟ ଦିଗ ପାଳ,
ମୁଁ ଯଦି ନ୍ୟାୟରେ ଅଛି,
ମୋତେ ଭାଉଜମାନେ ଯାହା କଲେ,
ମୁଁ କାନ୍ଦିଲେ, ସେ ହସିଲେ ।
ମୁଁ ହସେ ସେ କାନ୍ଦନ୍ତୁ ।
ଛଅ ବରଷ, ଛଅ ମାସ, ଛଅ ଦିନ ନ ପୂରୁଣୁ,
ସେମାନେ ମାଛ ହୋଇଯାଆନ୍ତୁ ।"

ଏ-ଅଭିଶାପ ଫଳିଲା । ତା ଭାଉଜମାନେ—କିଏ ସମୁଦରର ଲୁଣି ପାଣିରେ, କିଏ ନଈ ପୋଖରୀରେ,ମିଠା ପାଣିରେ ମାଛ ହୋଇ ଜନମ ହେଲେ । ବଡ଼ ଭାଉଜ ଚିତ୍ରାଙ୍ଗଦା ହେଲା—ଚିଙ୍ଗୁଡ଼ି । ମଝିଆ ରୋହିଣୀ ହେଲା—ରୋହୀ । କନକଲତା—କରାଣ୍ଡି, କେତକୀ—କଣିଆ, ମରକତମଣି—ମିରିକାଳି, ଭାନୁମତୀ—ଭାକୁର । ନିକେ ତଅପୋଇ ହେଲା ତରାକୁ । ନିଳେନ୍ଦି—ନାଇଲନ୍ ଜାଲ । ପୂର୍ବ ମାନ, ଗୁମାନ, ଅଭିମାନ, ରାଗ, ରୋଷ ଭୁଲି, ଓଡ଼ିଶାର ବଣିଜ ବେଉସା ଚାଲୁ ରଖିବାରେ ସେ ଲାଗି ପଡ଼ିଲେ । ନିଜକୁ ବିକି, ବିକାଇ ବଣିଜ ବଢ଼ାଇଲେ । ପାପଭାର କମାଇଲେ । ତଅପୋଇ ତୁଳ ଦେଲା । କାହାର ଭାଉ କେତେ ହେଲା । କରମ ଫଳ କେତେ ସୁଝିଲା । କେତେ ରହିଲା । ]

ସେ ଦିନଟି ହେଲା—କାର୍ତ୍ତିକ ପୂର୍ଣ୍ଣିମା । ଚିଙ୍ଗୁଡ଼ି—ବଡ଼ ଭାଉଜ, ଲେଖି ବସିଲା ଚିଠି । ଭଉଣୀ ରୋହିଣୀକୁ ।

ସମୁଦର ତଟ
ପୁରୀ ।

ଭଉଣୀ ରୋହଣୀ !

କ'ଣ ଲେଖିବ । ଆଜି ବଡ଼ ଡ୍ରେର ନୋଳଆ ଟୋକା ମୋତେ ଧରି ନେଇଛି । ମୁଁ ମରିବା ଆଗରୁ ଏ ଚିଠି ତୋତେ ଲେଖୁଛି ।

ମୋର ଗରବ ଥିଲା, ମୁଁ ସମୁଦରରେ ରହୁଛି । କେଡ଼େବଡ଼ ଘରସଂସାର ମୋର । କ'ଣ ହେଲା—ମୋ ଦଶା । ବଡ଼-ସାନ, ସଭିଏତ ମୋ ପରି ମରିବେ । ହେଲେ ମୋ ଦୁଃଖ ହେଲା, ମୁଣ୍ଡକଟା ହୋଇ ସମୁଦର ପାରି ହୋଇ ବୁହା ହେବି ଆମେରିକାକୁ । ମୋ ମର ଦେହକୁ ବରଫରେ କବର ଦେବା ଯୋଗାଡ଼ ଚାଲିବ । କି ଥଣ୍ଡା—ସେ ବରଫ । ମୁଁ ବଞ୍ଚିଥିବି ଯେ, ଜାଣିବି ।

ସମୁଦର କୂଳରେ ନିଖିଲ୍ ଦାଦା କାଗରେ ହାତମାରି କହୁଛି, "ତୋମାକେ ଆମି ଆମେରିକା ପାଠିଏ ଦିବ ।" ପରାଣ ଧକସକ ହେଉଥିବା ସମୟରେ, ଏତିକି ଶୁଣି ରାଗରେ ଗରଗର ହେଲି । ମୋର ବା ଆଉ ଚାରା କାହିଁ ?

ଭଉଣୀ ଲୋ ! ତୁ ପରା ଲେଖିଥିଲୁ, ଆମ ତଅପୋଇ ମାଛ ଓଜନ କରି ବିଦେଶକୁ ପଠାଇ ଦି ପଇସା ରୋଜଗାର କରୁଛି । କାହିଁ ମୁଁ ତ ତାକୁ ଦେଖି ପାରିଲିନି । ସେ ଭଲା ଆମକୁ ଓଜନ କରି ନିଅନ୍ତା । ବିଚାରା ନୋଳଆ କେଡ଼େ ମୂରୁଖ । ଆରେ ବାବା ଜୀବନ ମୁରୁଛି, ଗହିର ସମୁଦରରେ ମୋତେ ଧଇଲୁ । ଅନ୍ୟକୁ ଅଳପ ପଇସାରେ ବିକିବୁ କିଆଁ ? କେଡ଼େ ବୋକା ଏମାନେ ।

ରୋହଣୀ ଆମ ଭିତରେ ଗୋରା ଓ କଳା ଦୁଇ କିସମର ଚିଙ୍ଗୁଡ଼ି ଅଛନ୍ତି । ମୁଁ ଶୁଣୁଛି, ଆମ ଧଳା "ବାଗଦା" ଠାରୁ "କାଳିଆ ଖଡ଼ା"ର ଚାହିଦା ବେଶୀ । ହେଲେ ନୋଳଆ ଜାଣିବେ କାହୁଁ । ପେଟବିକଳିଆ, ନୋଳଆ ବିନା ଓଜନରେ, ଖୁବ୍ ଶସ୍ତାରେ ଆମକୁ ନିଖିଲ ଦାଦାକୁ ବିକି ଦେଲା । ହାତୀ ପରି ଆମେ ମଲେ ଗଲେ ସମାନ ।

ଜାହାଜରେ ଚଢ଼ିବା ପୂର୍ବରୁ ଜାହାଜକୁ ତ ଦେଖି ପାରିଲିନି । କିଏ କେଉଁଠି ରହିଲେଣି । ତିଅପୋଇ, ଭଲ ଦେଖା ହୁଅନ୍ତା । ସବୁ କପାଳ ଲିଖନ । କିଏ ଆନ କରିବ ।

ଆମ ମୁଣ୍ଡ କଟା ବେଳ ହେଇ ଆସିଲାଣି । ବେପାରୀ କହୁଛି, "ଜାହାଜରେ ବରଫ ଭିତରେ ପନ୍ଦର ଦିନ ରହିବା ପରେ ଆମେ କୁଆଡ଼େ ଆମେରିକାରେ ପହଞ୍ଚିବୁ । ପାରାଦ୍ୱୀପ ବନ୍ଦରରୁ ଜାହାଜ ଯାତ୍ରା ଆରମ୍ଭ କରିବ । ବଡ଼ ବଡ଼ ହୋଟେଲ ମାଲିକମାନେ ଆମକୁ ଚଢ଼ା ଦରରେ କିଣି ନେବେ । ସେମାନେ ତ ବଡ଼ ଚତୁର । ସେ ଦେଶରେ ତ ପଇସା ଅଭାବ ନାହିଁ । କାଳିଆ-ଖଡ଼ା, ଗୋଟିକୁ ପନ୍ଦର ଟଙ୍କା । ଧଳା ବାଗଦା ଗୋଟିକୁ ଦଶ ଟଙ୍କା ଦରରେ ବିକି, ବେଶ୍ ଲାଭ କରିବେ । ଆମ ଲୋକେ, କେଡ଼େ ବୋକା । ଗୋଟାକୁ ଟଙ୍କାଟିଏରେ ବି ବିକି ପାରନ୍ତି ନାହିଁ । ଜାତି ଯାଉଛି; ଅଥଚ ପେଟ ପୂରୁନି । ତୋର ମନେ ପଡ଼ୁଛି—ସାଧବପୁଅ ମାଟି ହାଣ୍ଡି ବଦଳେଇ କେମିତି ମାଲ-ମସଲା ବୋଇତରେ ବୋଝେଇ ଆଣୁଥିଲେ । କେଡ଼େ ସିଆଣିଆ ଥିଲେ ସେମାନେ ।

ଭଉଣୀ ! ମୋର ଶେଷ ଅନୁରୋଧ । ତୁ ଆମ ଲୋକଙ୍କୁ କହିଦେବୁ । ଚେତେଇ ଦେବୁ । ବିଦେଶକୁ ମାଛ ପଠାଅ—ମନା ନାହିଁ । କିନ୍ତୁ ସିଧାସଳଖ ପଠାଅ । ଲାଭତକ ଆମ ରାଇଜରେ ରହୁ । ମଧ୍ୟସ୍ଥି କିଆଁ । ଆମେରିକା, ଜାପାନ ଲୋକେ ତ ସହଜେ ତେଲିଆ । ତାଙ୍କ ମୁଣ୍ଡରେ ପୁଣି ତେଲ ଢାଳିବ ? ବ୍ୟବସାୟ କ'ଣ ଏମିତି କରାଯାଏ ?

ସମବାୟ କରିଆରେ ମାଛ ବିଦେଶକୁ ପଠାଇଲେ, ଆମ ରାଇଜର ଲୋକମାନେ ଭଲରେ ଦି'ପଇସା ରୋଜଗାର କରନ୍ତେନି ।

ମୋ ମରା ଶରୀର ଆମେରିକା ଯାଉ
ତିଅପୋଇ ଶାପ ସଫଳ ହେଉ ।

ଇତି,
ତୋର ଅପା
ଚିଙ୍ଗୁଡ଼ି ।

ଚଠି ପଢ଼ି ରୋହଣୀର ଆଖି ଛଳ ଛଳ ହୋଇଆସିଲା । ତା ଅପା ଜନମ ମାଟି ପାଇଁ ଜୀବନ ଦେଲା ।

ପରଦିନ ରୋହଣୀ ତଅପୋଇକୁ ଜଣାଇଲା ।

କଉଶଲ୍ୟା ଗଙ୍ଗ,
ପୁରୀ ।

ତଅପୋଇ !

ଚନ୍ଦ୍ରାଅପା ଆଉ ନାହିଁ । ମୋର ମୋଟା ସୋଟା ଦେହ ଚେତେଇ ଦେଉଛି —ଦିନକାଳ ପାଖେଇ ଆସିଲାଣି ।

ସେ କାଳରେ, ତୁମ ଭାଇମାନେ ବଣିଜ କରି ଦେଶକୁ ଧନ ଦରବ ବୋହି ଆଣୁଥିଲେ । ବୋଇତ ବନ୍ଦେଇ ଆଣିବାବେଳେ, ଆମ ଛାତି ଫୁଲି ଉଠୁଥିଲା, ନୁହେଁ ।

ଏ-ରାଇଜ କ'ଣ ଥିଲା । ଆଜି କ'ଣ ହେଲା । ଗରିବ ବୋଲି କହିବାକୁ ସରମ ଲାଗୁଛି ଗୋ ତଅପୋଇ । ହାତ ଅଳସେ ପରା କାଶ ବଙ୍କା । ଆମ ଲୋକମାନେ ଅଳସୁଆ ହୋଇଗଲେ । ଦୁଃଖ ପାଇବେନି ? ପାଇବ କିଏ ?

ତୁମେ ତ ମାଛ ତୁଳିବାରେ ସାହାଯ୍ୟ କରୁଛ । ଟିକିଏ କଉଶଲ୍ୟା ଗଙ୍ଗ ଆସନ୍ତୁନି । କେତେ କଥା କହିବା ପାଇଁ ସାଇତି ରଖିଛି ।

ଓଡ଼ିଶା ରାଇଜରେ କେତେ ପୋଖରୀ । ସହର, ମଫସଲ ସବୁଠି । ହେଲେ, ଆମକୁ କିଏ ପାଳୁଛି ? ମିଠା ପାଣିରେ ଦଳୁଆ ପୋଖରୀରେ ଆମେ ପରା ଗୋଟାଏ ବରଷରେ ଦୁଇକିଲୋ ଯାଏ ବଢ଼ିଥାଉ । କିନ୍ତୁ, ଖାରିଆ ପାଣି ହେଲା, ଆମର କାଳ ।

ତଅପୋଇ ! ବିଲାତର ଲୋକମାନେ ଦେଶ ଛାଡ଼ି ସିନା ଚାଲିଗଲେ । ହେଲେ—ନା' ରଖି ଦେଇଗଲେ । ବିଲାତି ଆଳୁ, ବିଲାତି ବାଇଗଣ, ତା ସାଙ୍ଗକୁ ପୁଣି ବିଲାତି ରୋହୀଭିକୁର । ସବୁଠି ତ ବିଲାତର ଆଦର । ଦେଶୀକୁ ପଚାରେ କିଏ ? ଆମେ ପରା ଗାଁ କନିଆଁ, ସିଙ୍ଗାଣି ନାକୀ । ବିଲାତି ରୋହୀ ବକଟେ । ଛଇ, ଛଟକ କ'ଣ ଦେଖିବ । ସାନ ମୁଣ୍ଡିଆ କୁଜି-ଚୀନାରୋହୀ—ଦେହରେ କେତେ ହଳଦୀ ମାଖି ହୋଇଥାଏ । ବଡ଼ ମୁଣ୍ଡିଆ, ନାଲି ବିଲାତି, ଗେଡ଼ୀ ହେଲେ କ'ଣ ହେଲା—ରାଜକେମା

ପର ତା'ର ଯତନ କିଆ ଯାଉଛି । କ'ଣ ନା—ଦଳ-ଘାସରେ ସେ ଦେହକୁ ଘସି ବେଣୀ ଅଣ୍ଡା ଦେବ । ଛୋପର୍, ଅଣ୍ଡିରି ଗୁଡ଼ିକ ତା' ପଛରେ ଗୋଡେଇବେ । ତା' ଅଣ୍ଡା ଉପରେ ଦେହକୁ ଘସି ହେବେ । ଭଲ ମାଛ ଜାଆଁ ଲ ଜନମ ହେବେ ।

ତଅପୋଇ ! ଆମେ ପିନା ଚଷ ପାଉଁଶ ଉପରେ, ତୁମକୁ ଖାଇବାକୁ ଦେଉଥିଲୁ ଘିଅ । ଏବେ ଆମେ ଖାଇଲୁ—ଗୋବର, କୁଣ୍ଡା, ପୋଖରୀଦଳ । ଗଜଦନ୍ତ ପଲଙ୍କରେ ଶେଯ ପାରି ଶୋଉଥିଲୁ । ଆଉ ଏବେ—ପଙ୍କରେ ଶୋଇଲୁ । କପାଳ ଲିଖନ ।

ତଅପୋଇ ! ତୁମେ କଳେଦ୍ଧିକୁ ସଙ୍ଗରେ ନେଇ ଥରେ କଉଶଲ୍ୟା ଗଙ୍ଗ ଆସନ୍ତୁନି । ମୁଁ ଟିକେ ଆଖି ପୂରେଇ ଦେଖି ନିଅନ୍ତି ।

ମଲ୍ ପରେ ମୋ ତନୁ ହେବ ଓଜନ,
ଦେଶ ସେବାରେ ମୁଁ କି ହେବି ଭାଜନ ?
ବଙ୍କା କଣ ସଲଖି ମୋ ବାପ ଭାଇ,
ଧନ ଅରଜି ସୁଖେ ଚଳିବେ ଯାଇ ।

ମୋ ଜୀବନ ବନ୍ଧମସ୍ତରେ ଯଦି ଦି ପଇସା ମୋ ଦେଶରେ ରହନ୍ତା—କେତେ ଭଲ ହୁଅନ୍ତା । ଅପା ପରି ଆଦରଣ ରଖିଗଲ୍ । ପୂରୁବ ଗଉରବ ଫେରାଇ ଆଣିବାକି ?

। ଇତି ।
ଆଦରର
ରୋହିଣୀ

ତଅପୋଇ ଚିଠି ପାଇଲ୍ । କଳେଦ୍ଧିକୁ ସଙ୍ଗରେ ନେଇ କଉଶଲ୍ୟା ଗଙ୍ଗରେ ପହଞ୍ଚିଲ୍ । ହିଡ଼ ଉପରୁ ପୋଖରୀକୁ ଦେଖିଲ୍, ରୋହିଣୀ—ପାଟି ପାକୁ ପାକୁ କରି ଆଖି ତରାଟି, ତଅପୋଇକୁ ଏକ ଲୟରେ ଚାହିଁ ରହିଛି ।

—●—

# ଡୁରା ଡୁରୀ



[ ଆଡ଼ାମ୍ ଓ ଇଭ୍ ପରି ଡୁରା ଓ ଡୁରୀ ଏକ ପ୍ରାଚୀନ ଆଦିବାସୀ ଲୋକକଥା । ସୃଷ୍ଟି ସର୍ଜନା ପାଇଁ ଧର୍ମରୁ ସନ୍ତାନ ପ୍ରସବ, ହିନ୍ଦୁ ପୁରାଣମାନଙ୍କରେ ବର୍ଣ୍ଣିତ । ଲୋକ କଥାଟିରେ ପ୍ରଚଳିତ ଆଦିବାସୀ ଶବ୍ଦଗୁଡ଼ିକୁ ଅବିକଳ ବ୍ୟବହାର କରାଯାଇଛି । ଅନିବାର୍ଯ୍ୟ କାରଣ ହେତୁ ବୁରାପେନୁ ଓ ଡୁରାପେନୁ ପରିବର୍ତ୍ତେ ଡୁରା ଓ ଡୁରୀ ନାମକରଣ କରାଯାଇଛି । ହାଣ୍ଡିଆ—ମଦ, ଡୁଙ୍ଗୁ ଡୁଙ୍ଗା ବାଦ୍ୟ, ପେନୁ—ଦେବତା, ଦାରୁ—କାଠ ରୂପେ ବ୍ୟବହୃତ । ]

ପାହାଡ଼ ଉପରେ ଗୋଟି ଗୋଟିକିଆ ଚିକିଟିକି କେତୋଟି କୁଡ଼ିଆ । ଘର-ଗୁଡ଼ିକ ଏକ ମୁହାଁ । ଖ୍ୱାଟିମାଟିରେ ତିଆରି । ଆଙ୍ଗୁଠି ଟିପରେ ଗଣିହେବ । କେଉଁ ଅଜଣା ଅଶୁଣା କାଳରୁ ତାଙ୍କର ଜମିକୁ ଚଷ କରି, କେତେ ଘର ସଉରା ଦୁଃଖେ ସୁଖେ ସେଠି ମାଟି କାମୁଡ଼ି ପଡ଼ି ରହିଥାନ୍ତି ।

ଗାଁର ନାଁ—ନାକରିପୁଟୁ । ସତୁରି ବରଷର ଡୁରା ଗାଁ-ମୁଖିଆ । ତା'ର ଏକୋଇର ବଳା ଯୁଆନ ପୁଅ ଜାମରିର ଜନମ କଥା । ଏ ବୟସରେ, ଏବେ ବି ସବୁ ତା'ର ମନେ ଅଛି । ଭେଣ୍ଡିଆ ଡୁରା, ମାଣ୍ଡିଆ କାଉ ଆଉ ହାଣ୍ଡିଆ ଖାଇ, ହେଣ୍ଡି ମାରି ଦିନେ ଜଙ୍ଗଲରେ ବୁଲୁଥିଲା । ଦଇବାତେ ଭେଟ ହେଲା—ପାଖ ଗାଁ ଡୁଙ୍ଗୁରୁ-ପୁଟୁର କନ୍ଧାରୁ ଜାନି ଝିଅ ଡୁରୀ । ଡୁରୀର ଦଣ୍ଡା ବୟସ । ଯୁଆନ ଟୋକା ଦିଲା—ଠେକ ନାକୀ, ହେଟ ଗୋରୀ ।

ଯେମିତି ସୁନା ଝଟକୁଚି । ଲୁହା ଖଡ଼ୁକୁ ଘୁରେଇ, ଘୁରେଇ ଡୁରୀ, ଜଙ୍ଗଲରେ ଡେଇଁ ଡେଇଁ, ନାଚି ନାଚି, ଗାଇ ଗାଇ ଛେଳି ଗୋଠାଉଥିଲା । ଯେମିତି ଡୁରା ତାକୁ ଦେଖି ଦେଇଛି—ତା ଦିହର ଶିରା ସବୁ ଟଣକି ଗଲା । ପାଟି ଅଠା ଅଠା ହୋଇଗଲା । ରୋମ ସବୁ କଦମ୍ବ ଫୁଲ ପରି ଖାଡ଼ା ହୋଇଗଲା । ତା' ପଥର ଦେହ ପାଣି ହୋଇଗଲା । ଆଖି ଫିଟାଇ ନିରେଖି ଚାହିଁଲା । କଳା କଳା ନିକୁରା ଆଖି । ଡୁରା ଡୁରୀକୁ ଫୁସୁଲା-ଫୁସୁଲି-ସଲସୁତର କରି ମଙ୍ଗେଇ ଦେଲା । ତା'ପରେ ଚାଲିଲା ମାଦଳ ଓ ଡୁଙ୍ଗ୍ ଡୁଙ୍ଗା ବାଜା । ଦୁଇଜଣଙ୍କର ନାଚ । ଗାଁ ଲୋକଙ୍କୁ ଭୋଜି ଦେଇ, ଡୁରା ଡୁରୀକୁ ବୋହୂ କରିନେଲା ।

ଏମିତି ଡୁରା ଓ ଡୁରୀ ହେଲେ ଗିରସ୍ତ ଘରଜା । ଡୁରା କହେ, "ଡୁରୀ ଲୋ —ଆଜି ଖୋଲାକୂଳରେ ନାଚିବା ।" ଡୁରୀ କହେ—"ହଁ ଅଁ ···" । ପୁଣି ଦିନେ ଦିନେ ଡୁରା ଡୁରୀ ଦିହେଁ ସହରକୁ ଦାରୁ ବିକିଯା'ନ୍ତି । ବରା ଦେଖି ଡୁରୀର ପାଟି ଲାଳେଇ ଯାଏ । ଡୁରା ବରା କିଣେ । ଡୁରୀ ବରାରୁ ପୁଳାକ ଖାଇ, ଆର ପୁଳାକ ଡୁରାକୁ ଖୁଆଇ ଦିଏ । ଏମିତି ପହିଲି ଦିନଗୁଡ଼ିକ ମଉଜରେ କଟିଗଲା । ପିଛିଲା କଥା ମନେ ପଡ଼ିଲେ, ଡୁରା ଡୁରୀକୁ କେତେ ଗେଲ କରେ ।

ହେଲେ କ'ଣ ହେବ । ଭୁରୀ ମା' ହୋଇ ପାରିଲାନି । ଭୁରା ପରି ସୁଆନ ଟୋକା ଆଉ ଆଉ ଭୁରୀ ପରି ଗୁଣ୍ଟୁଣୀ ମାଇକି ଯଦି ମା ନହୋଇ ପାରିଲା—ତେବେ ସେଟା ତା କପାଳର ଦୋଷ । ଭୁରୀ ମନ ମାରି କାଳ କାଟିଲା । ବହୁ ବରଷ ବିତିଗଲା । ପୁଅ ବା ଝିଅ କେହି ତାକୁ ମା—ମା ବୋଲି ଡାକିଲେନି ।

ଦିନେ ରାତି ଅଧ । ଚାରିଆଡ଼ ଖାଁ ଖାଁ ଗୋଡ଼େଇଛି । ନିଶା ଗରଜୁଛି । ପକ୍ଷୀମାନଙ୍କର ଡେଣା ଫଡ଼ ଫଡ଼ ଶବଦ ଶୁଭୁଚି । ମଝିରେ ମଝିରେ ବିଲୁଆଟାଏ, ହେଟାଟାଏ, କୁକୁରଟିଏ ଭୁକି ହେଉଛନ୍ତି । ଘର ଭିତରେ ଡିବିରିଜାଳି ଭୁରା ଭୁରୀ ଦିହେଁ ମୁହାଁ ମୁହିଁ ଶୋଇଥାନ୍ତି । ଭୁରୀକୁ ନିଦ ହେଉ ନ ଥାଏ । ତା' ମନ ଗୁଡ଼େଇ ପୁଡ଼େଇ ହେଉଥାଏ । ଏଣେ ଭୁରା ନିଘୋଡ଼ ନିଦରେ ଜବର ଘୁଙ୍ଗୁଡ଼ି ମାରୁଥାଏ । ଭୁରୀ ଭାବୁଥାଏ—ତାର କ'ଣ ଛୁଆ ପିଲା ଜମାରୁ ହେବେନି ? ତା' ସାଙ୍ଗ କୁରୁପି, ଚେମି, ସାକନା, ଦୁଇ ତିନି ପୁଅ ଝିଅଙ୍କୁ ଜନମ ଦେଲେଣି । ସେ ଗୋଟେ ପିଲାର ବି ମା ହୋଇ ପାରିଲାନି ।

"ଏ—ଭୁରା ! ଉଠ୍‌ବା—କେତେ ଶୋଉଛୁ ।" ଭୁରୀ ଭୁରାର ମୋଟା ସୋଟା ଦେହକୁ ହଲେଇ ଉଠେଇଲା । ଭୁରା ଧଡ଼ପଡ଼ ହୋଇ ଉଠି ବସିଲା । ଭୁରୀ ତା ଛାତିରେ ଆଉଜି ପଡ଼ି କଇଁ କଇଁ କାନ୍ଦିବାକୁ ଲାଗିଲା । ଭୁରା କିଛି ଠଉରେଇ ପାରୁ ନ ଥାଏ । ଭୁରୀକୁ ପଚାରିଲା—"କଲୋ ! ଏ ରାତି ଅଧରେ କାନ୍ଦୁଛୁ କାହିଁକି ? ତୋର କ'ଣ ହେଲା କି ?" ଭୁରୀର ପାଟି ଖନୀ ମାରି ଯାଉଥାଏ । କ'ଣ କହିବ କହିବ ବୋଲି ଭାବୁଥାଏ । କିଛି କହି ପାରୁ ନ ଥାଏ ।

କ'ଣ ବା କହିବ ? ଖାଇବା କଥା—ନା—ପିନ୍ଧିବା କଥା । ବୁଲିବା କଥା—ନା—ନାଚିବା କଥା । ଚୁଲି-ନିଆଁ-ପାଉଁଶ, ଏମିତି କିଛି ହେଇଛି ଯେ, ପଦକେ କହିଦେବ ?

ତା' ପର ଦିନ ବଡ଼ି ସକାଳୁ ଉଠି ଭୁରୀ ଝରଣା କୂଳକୁ ଗଲା । ଗାଧୁଆ ପାଧୁଆ ସାରି—ବେଢ଼ଣ ଖଣ୍ଡିକ ଧୋଇ ଧାଇ ଘରକୁ ଫେରିଲା । କଲା ଗଞ୍ଜାଟିଏ ଧରି ଚାଲିଲା

—ଗାଁ ମୁଣ୍ଡର ତେନ୍ତୁଳ ଗଛ ମୂଳରେ ଥିବା ଖୁଣ୍ଟ ପାଖକୁ । ଖୁଣ୍ଟ ଦେହ ସାରା ସିନ୍ଦୂର ବୋଳା ହୋଇଥାଏ । ଆଖ ପାଖରେ କେତେକ ଭଙ୍ଗା ମାଟି, ଖପର, ଏଣେ ତେଣେ ପଡ଼ିଥାଏ । ଅସନା ଜାଗାଟିକୁ ପହଁର ଦେଲା ଭୁରୀ । ସେଇଟା ପର ପେନୁର ଜାଗା । ପେନୁ ବର ଦେଲେ ପିଲା ହେବ । ତାକୁ ଖୁସି କରିବା ପାଇଁ ଗଞ୍ଜା ବଳି । ଭୁରୀ ଲମ୍ବ ହୋଇ ପେନୁ ଆଗରେ ପଡ଼ିଗଲା । ଛଳ ଛଳ ଆଖିରେ କେତେ ମୁଣ୍ଡିଆ ମାଇଲା । କୁହାର ହେଲା । ଗୁହାର କଲା । ଉଠି ଦେଖେ ତ, ଗଞ୍ଜାଟି ନାହିଁ । ଆଉ କି ଗଞ୍ଜା ନା ପଞ୍ଜା । ପେନୁ ପର ବାଲୁଆ ରୂପରେ ବୁଦୁବୁଦିକିଆ ଜଙ୍ଗଲ ଭିତରେ, ହାଡ଼ କଡ଼ ମଡ଼ କରି ଗଞ୍ଜା ଖାଉଛି । ଭୁରୀ ସେ ସବୁ କିଛି ବୁଝିଲା ନି । କିଛି ଜାଣିଲା ନି । ମନେ ମନେ ଭାବିଲା—ପେନୁ ନିଜେ ଆସି ଗଞ୍ଜା ଭୋଗ ଖାଇଗଲା । ନିଶ୍ଚେ ପିଲା ହେବ । ମନ ଖୁସିରେ ଭୁରୀ ଘରକୁ ଫେରିଲା । ବରଷ ବରଷ ବିତିଗଲା । ତଥାପି ସେ ମା' ହୋଇ ପାରିଲାନି ।

ଭୁରା ଭୁରୀକୁ ଖୁସି କରିବା ପାଇଁ କେତେ କ'ଣ କଲା । ମାଳି, ମୁଦି, ଖଦି, ଖଜା, ଭୁଜା, ଜାନି ଯାତରା କେଉଁଥିରେ ଊଣା କଲାନି । ହେଲେ ମାଇକିନିଆ ମନ ସହଜରେ କି ଘର ଧରେ । ସବୁବେଳେ ଖାଲି ତ ପିଲା କଥା । ଗୋଟିଏ ଓଦିକି, ତିନୋଟି –ଚାରୋଟି—ପୁଅ ହୋଇଥିଲେ ଝିଅ, ଝିଅ ହୋଇଥିଲେ ପୁଅ । ଖାଦି—ପିନ୍ଧି ଖଦିପଟା—ଧଲୁ ଧାଲୁ–ପିଟାମରି—ଏ ସବୁ ନଥିଲେ ଘର ଖାଲି, ଖାଲି । ଖାଁ—ଖାଁ, ତଛା—ଡଛା । ଭୁରୀକୁ କିଛି ଭଲ ଲାଗିଲାନି । ନିଛାଟିଆ ବେଳେ ଆଖି ତା'ର ଜଳେଇ ଆସେ ।

ଏମିତି ବହୁତ ଦିନ ପରେ ଭୁରୀର ପୁଅଟିଏ ହେଲା । ନା ଦେଲା— ଜାମରା ।

ଦିନକର କଥା । ମାଛି ମାଛି ଅନ୍ଧାର ବେଳ । ଚାରିଆଡ଼ ନିଛାଟିଆ । ଭୁରା କାଠ ଗଡ଼ ଉପରେ ବସି ପୁରୁଣା କଥା ସବୁ ମନେ ପକେଇ ହସୁଥାଏ । ଭୁରୀ ତା ପାଖକୁ ଲାଗିଯାଇ ବସିଲା । ଗେଲେଇ ହୋଇ କହିଲା—"ଭୁରା ରେ ! କଥାଟିଏ କହିଲୁ । ଛୁଆ କଥା । ପିଲା କଥା । ଦେଖୁଛୁ ଗାଁରେ । ଘର ଘରକେ ଦୁଇ, ତିନି, ଚାରି । ସାନ ବଡ଼, ଆକୁଲୁ ମାକୁଲୁ—ମାଇ ଅଣ୍ଡିରା । ଆମର ତ କମାରୁ ଗୋଟିଏ । ଭୁରା

ଭୁରୀର କଥାକୁ ଠିକ୍ ଠଉରେଇ କହୁଲ୍—"ବୁଝିଲୁ ଭୁରୀ; ଜାନବୁଢା, ଜାମଭରଙ୍ଗ କହୁଥିଲ୍ ।

"ପହୁଲେ, ଆମ ପର ମାଇ ଅଣ୍ଡିରି ଦୁଇଜଣ ଥିଲେ । ଆଉ କେହୁ ନଥିଲେ—ପିଲ୍ ଟିକେ ଝିଲ୍ । ମାଇ ମନ କଲ୍—ପିଲ୍ ଭିଆଣ କରବ । ଝାଲରୁ ଛୁଆ ହେବେ । ଗୋଟିଏ ଦୁଇଟି ନୁହେଁ । କୋଡ଼କ କୋଡ଼ । ପଣକୁ ପଣ । ହନୁମାନ ଝାଲରୁ ତ ମକରଧ୍ୱଜ ଜନମ ହେଲ୍ । ପାରବତୀ ମା ହଳଦୀ ମରକୁଟିକୁ ମନ୍ତର କରି ଗଣେଶଙ୍କୁ ଜନମ କଲେ । ସେ କିଆଁ ନ କରିବ ? ଝାଲ ପୋଛି ଆଣିଲ୍ । ମନ୍ତର ଫୁଙ୍କି ଛାଡ଼ି ଦେଲ୍ । ଟୋପାଏ ଝାଲକୁ ଗୋଟାଏ ଛୁଆ । କେତେ ଛୁଆ ହେଲେ । ଅଗଣତି । ତଥାପି ଝାଲ ବୁହା ବନ୍ଦ ହେଉନ । ଯୁଆଡ଼େ ଚାହିଁବ—ଖାଲି ଛୁଆ—ଛୁଆ—ଆ—ଆ···। ଏତେ ଛୁଆ ହେଇଗଲେ ଯେ, ବସିବାକୁ, କୁଦବାକୁ, ଡେଇଁବାକୁ, ଖେଳବାକୁ—ଶୋଇବାକୁ ଜାଗା ନାହିଁ । ଦହକୁ ଦହ ଲାଗିଗଲ୍ । ଏନ୍ତ ପିଲ୍ ଯେ, ଖାଇବାକୁ ଖାଦ, ପିନ୍ଧିବାକୁ ଖଦ, ପିଇବାକୁ ପାଣି ଟୋପାଏ ବି ମିଳଲାନ । ସବୁତକ ଲଙ୍ଗଳା ହେଇ, କୁଦାମାରି ମା' ଚାରିଆଡ଼େ ବେଢ଼ିଗଲେ । ବେଢ଼ିଗଲେନ ତ—ମା ଉପରକୁ ଉଠିଗଲେ । ହାତରେ, ଗୋଡ଼ରେ, କାନ୍ଧରେ, ତଣ୍ଟରେ, ମୁଣ୍ଡରେ, ମୁହଁରେ, ନାକରେ, କାନରେ ସବୁଠି ପିଲ୍ । ମା'କୁ ଭିଡ଼ା ଓଟରା କଲେ । ଖାଇବାକୁ ପଇବାକୁ ଚଲେଇଲେ । ମୂଳରୁ ତ ଖାଦ ନାହିଁ । ଖଦପଟା କଥା କିଏ ପଚାରେ ?

କାହା ନାକର ସିଂଘାଣି ମା ପାଟିରେ ତ, କାହା ଲାଳ ଗଡ଼ ମା' କାନରେ । ପିଲ୍ମାନେ ମା'କୁ କଞ୍ଚା ଖାଇ ଗୋଡ଼େଇଲେ । ନା—ଶୁଆ, ନା—ବସା । ନା—ଖିଆ, ନା—ପିଆ । ମାଆ ତ ବିକଳରେ ବୋବାଳି ଛାଡ଼ିଲ୍ ।

ବାପ କିନ୍ତୁ ଦୂରରେ ଥାଇ, ସବୁ ଦେଖୁଥାଏ । ମୁରୁକି ମୁରୁକି ହସୁଥାଏ । ଯେତେବେଳେ କଥା ବଳି ପଡ଼ିଲ୍—ମା' ପିଲ୍ଙ୍କୁ ହାତ ଗୋଡ଼ ଛାଟି, ଠେଲ୍ ପେଲ୍ କରି, ଗୋଇଠା ମାରି ଧାଇଁ ପଳେଇବାକୁ ବାହାରିଲ୍ । ଛାଡ଼ୁଚି କିଏ ? ମଣିଷ ପିଲ୍ କି ସହଜ ଜନ୍ତୁ । ଏତିକିବେଳେ ବାପ କ'ଣ କଲ୍ନା, ମାଟି ମୁଠାକୁ ମନ୍ତର କରି ପିଲ୍ଙ୍କ ଉପରକୁ ଫ—ଉ-ଉ-ଉ—କିନା ଫୁଙ୍କି ଦେଲ୍ । ଯା—ସବୁତକ ପିଲ୍ ମାଟିରେ ମିଶିଗଲେ ।"।

ଭୂରି କହିଲା—"ବୁଝିଲୁ ଭୁରୀ ! ଭୁ ସେ ମନ୍ତ୍ରଟି ଶିଖିଯା । ତୋର କେତେ ପିଲା ହେବେ । ମୁଁ ଶିଖାଇଦେବି । ହେଲେ—ପିଲାଙ୍କୁ ମାଟିରେ ମିଶେଇବା ମନ୍ତ୍ର ମୋତେ ଜଣା ନାହିଁ ।"

ସେତେବେଳକୁ ଭୂରୀ ଭାବୁଥିଲା—ସତରେ, ତା' ନିଜ ଉପରେ ଛୁଆଗୁଡ଼ାକ ଚଢ଼ି ଯାଉଛନ୍ତି । ତାକୁ କେମିତି କଲି କଲି ଲାଗୁଛି । ବହୁତ ପିଲା ପାଇବାକୁ, ତାର ଆଉ ମନ ନଥିଲା ।

ଏବେ ବି, ତା ଜାତର ଲୋକଙ୍କର ପିଲା ଅଳପ । କେତୋଟି ପିଲା । ବେଶ୍ ମୋଟା ମୋଟି । ଥାକୁଲୁ ଥୁକୁଲୁ । ଡଉଲ-ଡାଉଲ । ପିଲାଙ୍କ କଅଁ କଅଁ ହସରେ ମନ ଲୁଣ୍ଠେ ମୋଟ ।

ଗାଁ ମୁଣ୍ଡରେ ଭୂରୀର ପୁଅ ଜାମଲା ବଇଁଶି ବଜାଉଥିଲା ।

---

# ଚକୁଳିଆ ପଣ୍ଡା

[ ଚକୁଳଆ ପଣ୍ଡା, ତାଳପତ୍ରଛତା ଧରି ଗାଁ-ଗାଁରେ ଭିକ୍ଷା ମାଗି ବୁଲନ୍ତି । ସେମାନେ ଯାହା କହନ୍ତି--ସେଥିରେ ଦାନର ମହିମା, ଧର୍ମଶିକ୍ଷା ଓ ନୀତିଶିକ୍ଷା ବିଷୟ ଥାଏ । ]



ଆହେ ଆପଣେ !
ଦେଇଥିଲେ ପାଇ ।
ବୁଣିଥିଲେ ଦାଇ ।
ପଡ଼ିଆ ବାଡ଼ିରେ ଗୋଧନ ଚରାଇ,
ହେ ଆପଣେ ।

ହେ ଆପଣେ !
ମହୀରେ ଘଟଇ ଅଘଟଣ ।
ଅଧରମ କାମ ଏହା ଜାଣ ।
ଶାଶୁ ଏ ହୋଇଲେ ଏବେ ଯଉତୁକ ବାଇ
ଘରଜା ପରେ ନପଡ଼େ ଗିରସ୍ତିର ଛାଇ ।
ଦାନ୍ତରେ ତରଣ ଧରି, ବୋହୂ ନେହୁରା
ହୁଅଇ ।
ନିନ୍ଦା, ଅପମାନ ଅଶେଷ କଷଣ ସହଇ ।
ଯାତନା ଲାଘବ ଯେବେ ନ ହୋଇଲା,
ନିଆଁରେ ପୋଡ଼ିହୋଇ ଜିଏ ମଲା ।
କିଏ କୂଅକୁ ଡେଇଁଲା ।
ଯଉତୁକ ବ୍ୟାଧି ଯୋଗୁଁ ପ୍ରାଣ ନାଶ ଗଲା,
ହେ ଆପଣେ ।

ହେ ଆପଣେ ! ଧରମ ଲାଗି ଜଗତ ଆତଯାତ ।
ଧରମରୁ ରାମର ଜୟ । ଅଧରମରୁ ରାବଣର କ୍ଷୟ ।
ଧରମ ଲାଗି ବହେ ବାତ । ସମୁଦ୍ରରେ ପାଣି ଅକାତ କାତ,
ହେ ଆପଣେ ।

ହେ ଆପଣେ ! ସତ କହିବାକୁ ମିଛ କହିବ,
ଅଙ୍ଗେ ନଭିଇବା କଥା କହିବ ।
ଝିଅ ଯେଣୁ ଦୁଇ କୂଳକୁ ହିତା, ତେଣୁ ସେ ଦୁହିତା ହେ ।
ସେ ଏବେ ଦୁଇ କୂଳରେ ହୋଇଲା ପିତା, ହେ ଆପଣେ ।

ହେ ଆପଣେ ! ନାରୀର ଜନମ ସିନା ଲୋକ ହିତ ପାଇଁ,
ନାରୀ ପାଳେ ସବୁ କୁଟୁମ୍ବକୁ ସ୍ନେହ ଦେଇ,
ସ୍ୱାମୀ ଠାରେ ସ୍ୱାମୀସ୍ନେହ, ପୁତ୍ରେ ପୁତ୍ରସ୍ନେହ,
ଘରର ଘରଣୀ ନାରୀ, ସ୍ନେହ ତା ହୃଦୟ, ହେ ଆପଣେ ।

ହେ ଆପଣେ ! ନାରୀ ଭୋଜନେ ମାତା, ବିପଦେ ମନ୍ତ୍ରୀ ।
ରତେ ରମ୍ଭା, ରୋଗ କଷ୍ଟେ
ସେବାଦାସୀ ହେ ଆପଣେ ।
ନାରୀ ଜାୟା, ଜନନୀ, ଭଗିନୀ—କାମିନୀ,
ଭୁବନ ମନ ମୋହିନୀ, ହେ ଆପଣେ ।

ହେ ଆପଣେ ! ସମସ୍ତଙ୍କ ଠାରୁ ବ୍ରହ୍ମା ଆଣି ସାରମାନ,
ସ୍ତିରୀ ବୋଲି ପଦାର୍ଥେକ କଲା ଯେ ଭିଆଣ ।
ସ୍ତିରୀ ନାମ ଆଗେ ରଖି ଚଳନ୍ତି ଦେବ ଯେତେ,
ରାଧାକୃଷ୍ଣ—ସୀତାରାମ, ଲକ୍ଷ୍ମୀ ନାରାୟଣ ମତେ । ହେ ଆପଣେ ।

ହେ ଆପଣେ ! ଶଚୀ, ଇନ୍ଦ୍ରଙ୍କଠାରୁ ବଡ଼ ।
ସାବିତ୍ରୀ, ବ୍ରହ୍ମାଙ୍କଠାରୁ ବଡ଼ ।
ପାର୍ବତୀ, ଶିବଙ୍କଠାରୁ ବଡ଼ ।
ଲକ୍ଷ୍ମୀ, ନାରାୟଣଙ୍କଠାରୁ ବଡ଼ ।
ସୀତା, ରାମଙ୍କଠାରୁ ବଡ଼ ।
ସହଜେ ତ, ରାଧା—କଳାକାହ୍ନୁଠାରୁ ବଡ଼, ହେ ଆପଣେ ।

ହେ ଆପଣେ ! ପୁରାଣରୁ ଶୁଣୁଥିଲେ ଯେତେକ ହରଣ,
ସୁଗନ୍ଧିକା, ସୁଭଦ୍ରା, ଉଷା, ନୀରବତୀ ଜାଣ,
ଆଉର୍ ଚନ୍ଦ୍ରକଳା, ଚନ୍ଦ୍ରାବତୀ, ଇଚ୍ଛାବତୀ
ସ୍ୱଇଚ୍ଛାରେ ବରିଥିଲେ ଆପଣାର ପତି, ହେ ଆପଣେ ।

ହେ ଆପଣେ ! ଇନ୍ଦ୍ର ହରଣ କଲା, ଗଉତମ ପତ୍ନୀ,
ପାପଭାରେ ହେଲା ତାର ସହସ୍ରେକ ଯୋନି ।
ସୀତାୟା ହରଣ ଯେନି ରାବଣ ମରଣ,
ଭାଇବୋହୂ ହରି ବାଳି ହୋଇଲା ନିଧନ ।
ଚନ୍ଦ୍ର ହରଣ କଲା, ତାରା ମହାସତୀ,
କଳଙ୍କିତ ହେଲା ତନୁ ସଦା ମନେ ଭୀତି ।

ହେ ଆପଣେ ! ପରସ୍ତ୍ରୀ ହରଣ କଲେ ନିଶ୍ଚେ ନାଶ ଯିବ,
ତା' ଜୀବନ ମରଣୁ ବଳି, ଯେ' ହୋଇବ, ହେ ଆପଣେ ।

ହେ ଆପଣେ ! ଯେ ଯାହା କରଇ ସେ ତାହା ଭୋଗଇ,
ମିଛେ ମିଛେ ନିଜ କରମ ନିନ୍ଦଇ ।
ହରକତ ହେଲେ ଯାଇ ଅଖା ଧୋଉଥାଉ,
ନାରୀ ଅପମାନ ଆଉ ସହ୍ୟ ନ ହୁଅଇ, ହେ ଆପଣେ ।

ହେ ଆପଣେ !　ଧର୍ମରୁ ଧରମ ଏବେ ଛାଡ଼ିଗଲା,
ମହୀ ଛାଡ଼ି ପଳିବା ବେଳ ହୋଇଗଲା ।
ବାରବାର ବାତ୍ୟା ବନ୍ୟା ମରୁଡ଼ି ପଡ଼ିଲା,
ଭୟ ଭାବନା ସବୁ ଅନ୍ତର ହୋଇଲା ।
ଲୋକେ ପୋକ ମାଛି ପରି ହେଲେ ନାରଖାର,
ହତା ହତ ଜ୍ଞାନ ନାହିଁ ବଡ଼ଭୟ ବେଭାର, ହେ ଆପଣେ ।

ହେ ଆପଣେ !　ସୁଷମାର ଖଣି, ରମଣିମଣି ସେ, ଛବିରାଣୀ,
ସ୍ୱାଧୀନଚେତା, ପୁଣ୍ୟ ବନିତା,
ସୁଚରିତା ସେ ସୁପରିଚିତା,
ପାଦେ ଅଳତା, କପାଳେ ଚିତା,
କାନେ ମୁକୁତା, ବେକଟିରେ ସୁନା ସୂତା, ହେ ଆପଣେ ।
ମାରି ମହାପାତ୍ରେ, ମହାପାପ କଲେ,
ମହୀମଣ୍ଡଳରେ ହେଲା ବଦନାମ, ହେ ଆପଣେ ।

ହେ ଆପଣେ !　ଗଣ ଧରଷଣେ କିଏ ସୁଜାତା,
ଆତ୍ମ-ହତ୍ୟାକରି କଲା ମହାଯାତ୍ରା ।
ମାଲତୀ, ମାଧୁରୀ, ଶାନ୍ତ, ସୁକାନ୍ତ,
ମୁକତ ନହୋଇ ଘୂରି ବୁଲନ୍ତ
ସେ ଦିବା ରାତି, ହେ ଆପଣେ ।

ହେ ଆପଣେ !　ଲମ୍ବା କାନଆ ଯେ, କୁକୁର ପଲ,
ଅଶ୍ଳୀଳ ଇଙ୍ଗିତେ ମାରି ଆଖିଟି,
ଭୃକମ୍ପ ଦେଖିଲେ ଝିଅ ବୋହୂଟି ।
କି ଦେଖିବ ତାଙ୍କ ବାଙ୍କ ଚାହାଁଣି
ନିଭଙ୍ଗ ଠାଣି, ବଡ଼ କୁହାଳିଆ
ଚାଲି ଅଛୁଆଣି । ହେ ଆପଣେ ।

ହେ ଆପଣେ ! ନାରୀର ବାସନା ପାଏକ ତୃପ୍ତି,
ଅଶାନ୍ତ ମନ ସନ୍ତତରେ ଭୀତ
ଆଚାର ବଚାରରେ ଯେତେ ଅନୀତ
ରକତ ଝୁଣି ପିଇବା ଉଚତ ରୀତ, ହେ ଆପଣେ ।

ହେ ଆପଣେ ! ଜାଣିନ୍ତ କ କଏ ବଳାସବତୀ
ପରମ ସତୀ, ସପତଣୀ ହୋଇ
ଜଳକନ୍ୟା ବନ୍ୟା ଦାଉ ସାଧିଲା ଅତ ।
ଏକୋଇର ବଳା ଗଲା କୁଆଡ଼େ ଖୋଜଇ ନତ
ବକଳେ କାନ୍ଦଇ ସେ ଦନ ରାତ,
ହଜାଇ ଦେବତା ଘରଏ ପତ ।
କୋହ ଆସେ ତାର ଅତୀତ ସୁମର
ଏକାକନୀ ସେ ପଦଚାରୀ
ପେଟ ବକଳରେ ବାଟବଣା ହୋଇ
ସହର ଛକରେ ବସିଲା ଯାଇ, ହେ ଆପଣେ ।

ହେ ଆପଣେ ! ଅଧରୀ ଯୁଆନ ଟୋକାଏ ଜାଣ,
ବାଦାମବାଡ଼ର ନକଟେ ମିଳଣ,
ବାହାନା ପେଖନା ଛଟକ ଛଇ,
ଦେଖାଇ ତା ମନ କିଣିବା ପାଇଁ,
ଧାଇଁଲେ ତା ପାଖେ, ସେ ଦଲ ହୋଇ, ହେ ଆପଣେ ।

ହେ ଆପଣେ ! ସଂସାର ସାଗରେ ସେ ଏକା ଏକା
ନାହିଁ କେ ତାରବ ପଣେ ଛନକା ।
ଆକୁଳେ କାନ୍ଦଇ ସେ କାଇଁ କାଇଁ
ବଷ ଖାଇବ କ, ପାଣିକି ଡେଇଁବ ବଚାରଇ ।
ସେ କାନ୍ଦ ଆକୁଳ ମେଘକୁ ଛୁଇଁ
କରକା ପାଣି ଫାଟଇ, ହେ ଆପଣେ ।

ହେ ଆପଣେ ! ମାତାଲ କଏ ଥାଣେ କାନ୍ଦ ପଣତ,
ହେଲା କଲେ ତା'ର ଯିବ ମହତ ।
ବୋଲେ ଛୁଅଁ ନାହିଁ ଅଙ୍ଗ ମୋହର
କୁଳଟା ନୁହେଁ ମୁଁ ବଧବା ଛାର ।
ଆକୁଳେ ଡାକିଲା ରଖ ହେ ମୋତେ,
ଧାଇଁଗଲେ, ଲୋକେ ମଣି ପରତେ । ହେ ଆପଣେ ।

ହେ ଆପଣେ ! କି କହିବା ସେ ପ୍ରହାର ରୀତି,
ଠେଙ୍ଗୁଣି ବାହାର ସେ କରାମତି,
ଭାଙ୍ଗିଦେଲେ ଆଣୁଗଣି ପିଠି ।
ସହଜେ, ଫଟା ରସିକ
ପିଠିରେ ତାଙ୍କ ଦାଗ ଚାବୁକ
ମାଡ଼ର ଦାଉ—ସେ ହାଉ ବାଉ, ହେ ଆପଣେ ।

ହେ ଆପଣେ ! ପରାଣ ବଳକଲେ ବୋବାଳି ଛାଡ଼ିଲେ
ସାହା ହେଲେ ନାହିଁ କେହି ତ ଆଉ । ହେ ଆପଣେ ।
ରସିକତା ଗଲା ଉଭେଇ,
ଧରନେଲେ ତାଙ୍କୁ ପୁଲିସ ଭାଇ ।
ରାହୁ କେତୁ ସରବେ,
ଫାଣ୍ଡିରେ ରହିଲେ ଯାଇ,
ହୋଇଲେ ବାଇ, ହେ ଆପଣେ ।

ହେ ଭକତେ ! ହେ ସୁଜନେ ! ହେ ସାମନ୍ତେ !
ଲିଙ୍ଗରାଜ ବିରାଜ ରାଜଧାନୀ ଯେବେ ଯିବ,
ମାନ ଉଦ୍ଧାରଣ ଜଗତ କାରଣ ଭଜିବ,
ମାନକୁ ଥାଣରେ ଜାବୁଡ଼ି ଧରି ରଖିଥିବ,
ମନକୁ ସ୍ଥିର, ମାନକୁ ଲଘୁ ରଖିବ,
ମଥା ନ ଟେକି ରାଜପଥେ ଗମିବ,
ହାତେ ମାପି, ଚାରିଖଣ୍ଡେ ଚାଲିବ, ହେ ଆପଣେ ।

ହେ ଭକତେ !	ସେଠି ଗଲ କହିରେ, ଛକା ପଂଝାରେ
କଷ୍ଟା କଟି ଅଭିଯାନ, ଗ୍ଳୁ ରହିବ ହେ ଆପଣେ ।

ହେ ଆପଣେ !	ଶୁଣ ମନ କର୍ଣ୍ଣ ଦେଇ,
ଚକୁଳିଆ ପଣ୍ଡା ଯେ କହଇ ।
ଅପର ସ୍ତିରୀ ହରଲେ ଆୟୁ କ୍ଷୟ ଯାଇ,
ଅପାର ହିଂସାରେ ଦେହ ପତନ ହୁଅଇ ।
ଅପାର ପାତକ କଲେ ନରକେ ପଡ଼ଇ,
ପର ସ୍ତିରୀ ହରଣେ ହେ ମେଦନୀ ଫାଟଇ ।

ହେ ଆପଣେ !	ହେ ସୁଜନେ ! ହେ ମହାଜନେ !
ଆକୁଳେ କଣାନ୍ତ ବନତା ଯେତେ,
ଆରତ ନାଶନ ନ ଶୁଣ କ ମତେ ?
ପାଞ୍ଚାଳୀ ମାନ ରଖିଲ ଯେବେ,
ଆନ ମାନ ତୁଚ୍ଛ କମ୍ପା ଏ ଭବେ ?
ବିଶ୍ୱ ରୂପ ତୁମ ଦେଖାଅ ହେ ହର
ଅବଳା ସବଳା କରହେ ଭୂଜ ବିସ୍ତାର ।

---



# ବଂଧୁ

ବଂଶୀଧର । ଜାତିରେ ବ୍ରାହ୍ମଣ । ବୟସ ସତୁରି ବର୍ଷ ପାଖାପାଖି । ବଡ଼ ସରଳ, ଧର୍ମ ବିଶ୍ୱାସୀ । ଜମିବାଡ଼ି, ଘରଦ୍ୱାର ସାଙ୍ଗକୁ ଧନ ଦରବର ଅଭାବ ନାହିଁ । ତାଙ୍କର ଦୁଇଟି ପୁଅ । ବ୍ରଜେନ୍ଦ୍ର ଓ ସୁରେନ୍ଦ୍ର । ବ୍ରାହ୍ମଣ ହେଲେ କଣ ହେବ ବଡ଼ ପୁଅ ପାଠ ପଢ଼ିଲା ନାହିଁ । ସାନ ପୁଅ ସୁରେନ୍ଦ୍ର ମାତ୍ର ମାଟ୍ରିକ୍ ପାଶ୍ କରିଛି । ବୁଢ଼ା ବୁଢ଼ୀ ଦୁଇପୁଅର ଘରସଂସାର କରି ସାରିଦେଇଛନ୍ତି । ବୁଢ଼ୀ ସଂସାରରୁ ବିଦାୟ ନେଇ ଚାଲିଗଲେ ।

ବୁଢ଼ୀ ଚାଲିଯିବା ପରେ ବୁଢ଼ା ଉପରେ ଘରର ସମସ୍ତ ଜଞ୍ଜାଳ ବୋଝଲଦି ହେଲା । ଏଥିରେ ବୁଢ଼ା ଯଷ୍ଟିହୀନ ଅନ୍ଧ ପରି ହୋଇପଡ଼ିଲେ । ବୁଢ଼ା ପୁଅମାନଙ୍କୁ ଡାକି କହିଲେ ମୋର ଆଉ କଣ ଅଛି । ଏସବୁ ଏବେ ପୁଅ ବୋହୂର । ତୁମର ସୁଖରେ ରହିଲେ ଆମେ ସୁଖୀ । ଏହା କହି ସ୍ଥାବର ଅସ୍ଥାବର ସଂପତ୍ତି ବଣ୍ଟନ କରିଦେଲେ । କହିଲେ, "ମୁଁ ଏଣିକି ତୁମର ଉନ୍ନତି ଦେଖିଲେ ମୋର ମନ ସୁଖ ଶାନ୍ତିରେ ରହିବ ।"

ବଡ଼ ପୁଅ ତ ପାଠ ଜାଣେନି । ସେ ବ୍ରାହ୍ମଣ ଘରର ପୁଅ ହେଲେ ମଧ୍ୟ, ତାର ଜମିବାଡ଼ିର ଉପଯୁକ୍ତ ଯତ୍ନ ନେଇ ପରିବାରଟିକୁ ସୁରୁଖୁରୁରେ ଚଳେଇନେଲା ।

ସୁରେନ୍ଦ୍ର ତ ମାଟ୍ରିକ୍ ପାଶ୍ କରିଛି । ତାର ଚାକିରି କରିବାର ବିଶେଷ ଇଚ୍ଛା । ଏତିକି ବେଳେ ବାପାଙ୍କଠାରୁ ପାଇଥିବା ଅର୍ଥରେ ମଟର ସାଇକେଲଟିଏ କିଣି ପକେଇଲା । ତାର କେତେ ଯେ ସାଙ୍ଗସାଥି ଅଛନ୍ତି, କହିଲେ ନ ସରେ । ସାଥିମାନେ ଆଖି ଠାରି ଦେଲା ମାତ୍ରକେ ସୁରେନ୍ଦ୍ର ମଟର ସାଇକେଲ ଖଣ୍ଡିକ ବାହାର କରି ନାଚ, ପାଲା, ଦାଣ୍ଡକାଠିଆ, ସିନେମା ଦେଖା କେବେ ବନ୍ଦ କରେନି । ପୁଣି କାହାର କମଳା ବାଡ଼ିରେ ପଶି କମଳା ନେଇ ଆସିଲା ତ, କାହା ଆଖୁବାଡ଼ି ଯାଇ ଆଖୁ ଭାଙ୍ଗିଲା । ରାତି ସାରା ଏଠି ସେଠି ଭେଜିଭାତ କମାଇଦିଏ । ତା ସାଙ୍ଗକୁ ଚିଲମ ଟଣାଠାରୁ ଆରମ୍ଭ କରି କେତେ ରକମର ପିଆ ପିଇ ମଧ୍ୟ ଚଳେଇଥାଏ । ପୁଣି ଚାକିରି ପାଇବା ଆଶାରେ ଏଠାକୁ ସେଠାକୁ ଧାଇଁ ହନ୍ତସନ୍ତ ହୋଇଯାଉଛି । କିଛି ହେଲାନି । ଏ ସବୁ ଦେଖି ଲୋକେ ସୁରେନ୍ଦ୍ରକୁ ଘୃଣାକଲେ । ବାପାଙ୍କଠାରୁ ପାଇଥିବା ଧନତକ ଶେଷ ହେବା ଉପରେ ।

ସୁରେନ୍ଦ୍ରର ଦୁର୍ଗୁଣଗୁଡ଼ିକ ବୁଢ଼ାଙ୍କ କାନକୁ ଆସିଲା । ବୁଢ଼ା ଦୁଃଖରେ ଅତିଷ୍ଠ ହୋଇ ପଡିଲେ । ସୁରେନ୍ଦ୍ରକୁ ପାଖକୁ ଡାକି ତାର ଦୁର୍ଗୁଣ ବିଷୟରେ ଗୋଟି ଗୋଟି କରି ତଆରି କହିଲେ, "ଆରେ ବାବୁ ! ଏ ଦୁଇଦିନିଆ ସାଥିମାନଙ୍କୁ ଛାଡ଼ିଦେ । ତୋଠାରୁ ଏମାନେ ସୁବିଧା ପାଉଥିବା ଯାଏ ତୋତେ ମାନିବେ, ତୋର ସାଙ୍ଗ ଛାଡ଼ିବେନି । କିନ୍ତୁ ଅଭାବ ବେଳେ କିମ୍ବା ବିପଦ ପଡ଼ିଲେ ଏମାନେ ପାଖ

ମାଡ଼ିବେ ନାହିଁ । ତୋର ଏ ଧନ ସଂପତ୍ତି ଯେବେ ଶେଷ ହୋଇଯିବ, ବଳବପୁ କମିଯିବ, ସେତେବେଳେ ତୁ ଏ କୂଳକୁ ହେବୁ ନା ସେ କୂଳକୁ ହେବୁ ? ଆମର ତ ଜମିବାଡ଼ି ଅଛି ତୁ ତାର ଉପଯୁକ୍ତ ତତ୍ତ୍ୱ ନେଲେ ପାଞ୍ଚ ପଚଶଙ୍କୁ ପ୍ରତିପାଳନ କରି ପାରିବୁ । ଆକାଶ କୁସୁମ । ଚିଲିକା ମାଛରୁ ଆଶା ଛାଡ଼ । ତୋ ଠାରୁ କେତେ ବଡ଼ ପାଠୁଆ ଦାଣ୍ଡରେ ବୁଲୁଛନ୍ତି । ତୁ ଏ ବୃଥା ଆଶା କରନା । ଘର କାମରେ ଲାଗିପଡ଼ ।"

ବାପାଙ୍କର ଏକଥା ସୁରେନ୍ଦ୍ରର କାନରେ ମୋଟେ ପଶିଲାନି । ଓଲଟି ବୁଢ଼ାବାପାଙ୍କୁ କ'ଣ ଇଂରାଜୀରେ ଦୁଇ ଚାରିପଦ କହିଗଲା । ବାପା ବା ତାହା ବୁଝିବେ କଣ ? ଭାବିଲେ, "ମୋର କଥା ପୁଅର ମନକୁ ପାଉନି ।" ବୁଢ଼ା ବଡ଼ ଚିନ୍ତିତ ହୋଇ ପଡ଼ିଲେହେଁ ଧୈର୍ଯ୍ୟ ହରାଇଲେ ନାହିଁ । ପୁଅକୁ ପୁଣି ସତ୍‌ପଥକୁ ଆଣି ଶିକ୍ଷା ଦେବାପାଇଁ ବରାବର ସୁବିଧା ଉଣ୍ଡୁଥାନ୍ତି ।

ଏମିତି କେତେଦିନ ଗଲାପରେ ସୁରେନ୍ଦ୍ରର ବାପାଙ୍କ ଠାରୁ ପାଇଥିବା ଅର୍ଥତକ ଶେଷ ହୋଇଗଲା । ସେ ଘରୁ ଚାଲିଯାଇଛି ଚାରି ପାଞ୍ଚ ଦିନ ହେଲା ଘରକୁ ଫେରିନାହିଁ । ପୁଅକୁ ନ ଦେଖି ବାପା କାଉଳି ବାଉଳି ହୋଇ ପଡ଼ିଛନ୍ତି । ଏମିତି ସମୟରେ ଗାଁରେ ହଇଜା ଲାଗିଲା । ଗାଁର କେତେ ଲୋକ ମରିଗଲେଣି । ବୁଢ଼ା ତ ପୁଅକୁ ଶିକ୍ଷା ଦେବା ପାଇଁ ଖୋଜୁଛନ୍ତି । ଏ ସମୟରେ ବୁଢ଼ା ପାଳ ଗୁଡ଼େ ଆଣି ପାଳରେ ଗୋଟିଏ ପିଲାର ପ୍ରତିମୂର୍ତ୍ତି ତିଆରି କଲେ । ତାର ଦେହରେ ଅଖା ଗୁଡ଼ାଇ ଢାଙ୍କି ରଖିଦେଲେ ।

ଦୁଇଦିନ ପରେ ସୁରେନ୍ଦ୍ର ଘରକୁ ଫେରିଲା । ପୁଅକୁ ଦେଖି ବାପାର ମନ କୁଣ୍ଢେ ମୋଟ ହୋଇଗଲା । ପଅଝିଅ, କଣା, କୁଜା, ହେଲେ ମଧ୍ୟ, ବାପା, ମା ପକ୍ଷେ ସେମାନେ ସୁନ୍ଦର । ବୁଢ଼ା ତ ପୁଅକୁ ଶିକ୍ଷା ଦେଇ ସତ୍‌ପଥକୁ ଆଣିବା ପାଇଁ ଠିକ୍ କରିଛନ୍ତି । ପୁଅକୁ ପାଖକୁ ଡାକି କହିଲେ "ସୁରେନ୍ଦ୍ର ଆମ ଘରର ଚାକର ପିଲା ହଇଜାରେ ମରିଯାଇଛି । ତାକୁ ଘରୁ ବାହାର କରିବାକୁ କେହି ନାହିଁ । ତୁ ଯା, ତୋ ସାଥିମାନଙ୍କୁ ଡାକି ଆଣି ଶବଟିକୁ ଘରୁ ବାହାର କରି ପୋତିଦେବୁ ।"

ବାପାଙ୍କର କଥା ଶୁଣି ସୁରେନ୍ଦ୍ର ତାର ସାଥିମାନଙ୍କ ପାଖକୁ ଗଲା । କେହି ସୁରେନ୍ଦ୍ରକୁ ଏଥିରେ ସାହାଯ୍ୟ କରିବା ପାଇଁ ରାଜି ହେଲେ ନାହିଁ । ନିରାଶ ମନରେ ଫେରି, ବାପାଙ୍କୁ ଏକଥା ଜଣାଇଲା ।

ବିମ୍ବାଧର ତାଙ୍କର ପିଲାଦିନେ ପୁରୀ ଜଗନ୍ନାଥ ଦର୍ଶନ କରିବାକୁ ଯାଇଥିଲେ । ତାଙ୍କ ସାଙ୍ଗରେ ତାଙ୍କ ଗାଁର ସାହାବଳି ପାଣ ଯାଇଥିଲା । ଜଗନ୍ନାଥ ଦର୍ଶନ କରି ସମସ୍ତେ ଭଗବାନଙ୍କ ନିର୍ମାଲ୍ୟ ଖିଆ ଖୋଇ ହେଉଥାନ୍ତି । ସେଠି ବାଛ ବିଚାର ନାହିଁ । ବିମ୍ବାଧର ଓ ସାହାବଳି ମଧ୍ୟ ସେ ନିର୍ମାଲ୍ୟ ଖିଆ ଖୋଇ ହୋଇ ମହାପ୍ରସାଦ ବସିଥିଲେ । ବିମ୍ବାଧର ତାଙ୍କ ମହାପ୍ରସାଦ ସେହି ସାହାବଳି ପାଣକୁ ଡାକ ଆଣିବାକୁ ପଠାଇଲେ ।

ସୁରେନ୍ଦ୍ର ତାର ମିତବାପା ପାଖରେ ଯାଇ ସମସ୍ତ କଥା ଶୁଣାଇଲା । ମିତ-ବାପା ସାହାବଳି ସାଙ୍ଗେ ସାଙ୍ଗେ କହି ଉଠିଲା "ବିପଦବେଳେ ମୁଁ ମହାପ୍ରସାଦ ଘରକୁ ଯିବିନି ତ, କେତେବେଳେ ଯିବି ?" ଏହା କହି ସାଙ୍ଗେ ସାଙ୍ଗେ ସୁରେନ୍ଦ୍ର ସହିତ ଆସିଲା ।

ମହାପ୍ରସାଦ ଦୁହେଁ ବହୁତ ଦିନ ପରେ ଭେଟ। ଭେଟିହେବାରୁ ଦୁହେଁ କୋଳା କୋଳି ହୋଇଗଲେ । ସୁରେନ୍ଦ୍ର ଏହା ଦେଖି ବଡ଼ ଆଚମ୍ବିତ ହୋଇଗଲା । କାରଣ ସେତେବେଳେ ବ୍ରାହ୍ମଣମାନଙ୍କ ଦେହରେ ପାଣମାନଙ୍କର ଛାଇ ପଡ଼ିଲେ ମହାପାପ ବୋଲି କହୁଥିଲେ । ଦୁହେଁ ଏକାଠି ବସି ପୁଅ ସୁରେନ୍ଦ୍ରକୁ ପାଖକୁ ଡାକ କହିଲେ, "ତୁ ଯାଇ ଶବଟାକୁ ଏଠାକୁ ଆଣ ।" ସୁରେନ୍ଦ୍ର ଶବଟିକୁ ଆଣିଲା । ଖୋଲି ଦେଖିଲା ପାଲରେ ତିଆରି ପିଲାର ପ୍ରତିମୂର୍ତ୍ତି, ଏଥିରୁ ସେ କିଛି ବୁଝିପାରିଲା ନାହିଁ । ବାପା ଅଳ୍ପ ହସି ତାକୁ ବୁଝାଇ ବସିଲେ । ପୁଅକୁ ତାର ସାଥୀମାନଙ୍କର କଥା କହିଲେ । ତାର ସାଙ୍ଗସାଥୀ ଓ ବାପାଙ୍କର ଏକମାତ୍ର ସାଥୀ ମହାପ୍ରସାଦଙ୍କ ମଧ୍ୟରେ କି ତଫାତ୍ ଅଛି, ସୁରେନ୍ଦ୍ର ଏତେବେଳେ ବେଶ୍ ବୁଝିପାରିଲା । ମନେ ମନେ ଭାବିଲା; ବାପା ଯାହା କହୁଥିଲେ ତାହା ପ୍ରକୃତ କଥା । ସେଠୁ ସେ ବାପା ଓ ମିତବାପାଙ୍କ ପାଦ ଛୁଇଁ ପ୍ରତିଜ୍ଞା ବଦ୍ଧ ହେଲା ଯେ ବାପାଙ୍କ ଉପଦେଶ ଏଣିକି ଅବଜ୍ଞା କରିବ ନାହିଁ । ସେହି ଦିନଠାରୁ

ସେ ତାର ସେହି ସାଙ୍ଗ ସାଥୀଙ୍କୁ ଛାଡ଼ି ଦେଇ ନିଜ ଘର କାମରେ ମଜ୍ଜିଗଲା । କହିଲା; "ସିଂହର ଲାଞ୍ଜ ହେବାଠାରୁ ମାଛର ମୁଣ୍ଡ ହୋଇ ରହିବ ବରଂ ଭଲ ଚାକିରି କରିବା ଆଶା ମନରୁ ଏକାବେଳକେ ପୋଛିଦେଲା ।"

ବାପାଙ୍କର ତ ଜମି ଢେର ଥିଲା । ତାକୁ ଉପଯୁକ୍ତ ଭାବରେ କମାଣି କରି ଉନ୍ନତ ଧରଣ ଚାଷ କରିବାରେ ଲାଗି ପଡ଼ିଲା । ସେ ଏଥିପାଇଁ କୃଷି ବିଭାଗର କର୍ମଚାରୀମାନଙ୍କ ସହିତ ସୁସମ୍ପର୍କ ରଖିଲା । ସେମାନେ ସୁରେନ୍ଦ୍ରକୁ ଉପଯୁକ୍ତ ଚାଷ ପ୍ରଣାଳୀ, ବିଶୋଧିତ ବିହନ ଓ ସାରର ବ୍ୟବହାର, ପୋକମରା ଔଷଧର ପ୍ରୟୋଗ ଶିକ୍ଷାଦେଲେ । ସୁରେନ୍ଦ୍ର ଏସବୁ ସୁବିଧା ପାଇବାରୁ ଧାନ ଓ ରବି ଆଦି ପ୍ରଚୁର ଫସଲ ଅମଳ କରି ପାରିଲା । ଘରର ପୂର୍ବ ଅବସ୍ଥା ଫେରାଇ ଆଣିଲା । ତାର ଆଗ୍ରହ ଓ ଉତ୍ସାହ ଏତେ ବଢ଼ିଲା ଯେ, ସେ ଗୋଟାଏ ଟ୍ରାକ୍ଟର ଆଣି ଜମି ଚାଷ କରି ଅନେକ ଲୋକଙ୍କୁ ନିଜ ଚାଷ କାର୍ଯ୍ୟରେ ଲଗାଇ ପାରିଲା । ସେମାନଙ୍କୁ ସାହାଯ୍ୟ କଲା । ସୁରେନ୍ଦ୍ର ପାଖରେ ପିଲାଦିନର ଦୁଷ୍ଟାମି, ନିଶା ଦ୍ରବ୍ୟ ସେବନ ଆଉ ନାହିଁ । ତାର ମନର ବିରାଟ ପରିବର୍ତ୍ତନ ହୋଇଛି । ସେ ତାର ସାଥୀମାନଙ୍କୁ ଏବେ ଭଲ ନ ପାଇଲେ ମଧ୍ୟ ଘୃଣା କରେ ନାହିଁ । କହେ, "ଭାଇମାନେ ଯାହା ହେବାର ତ ହୋଇଯାଇଛି । ଏବେ ସେସବୁ ଭୁଲିଯାଅ । ସମୟ ଅଛି । ଆଉ ସମସ୍ତେ ନିଜ କାର୍ଯ୍ୟରେ ଲାଗିପଡ଼ । ଅଭାବ ଅସୁବିଧା ସବୁ ଦୂର ହେବ । ତାର ଜ୍ୱଳନ୍ତ ପ୍ରମାଣ ମୋ ପାଖରୁ ଦେଖିଯାଅ । ବେକାର ହୁଅନି ।" ଏହିପରି ସେ କେତେ କଥା କହି ସେମାନଙ୍କର ପରିବର୍ତ୍ତନ ଆଣିଲା ।

ସୁରେନ୍ଦ୍ର ପୁଣି ଗୋଟାଏ ବିରାଟ ଫଳ ବଗିଚା କରିଛି । ତା ବାଡ଼ିରେ ସବୁବେଳେ ଋତୁଷୋପଯୋଗୀ ଫଳମୂଳ ଭରପୂର ଥାଏ । ସଦ୍ୟ ପନିପରିବାରେ ମଧ୍ୟ ସେହିପରି ଭରା । ଏବେ ଖାଇବା ପାଇଁ ଲୁଣ ଛଡ଼ା ସେ କିଛି କିଣେ ନାହିଁ । କାହା ପାଖରେ ମଧ୍ୟ ହାତ ପତାଏ ନାହିଁ । ଚାକିରି ପାଇଁ ସେ ଯେଉଁ ଅଫିସରଙ୍କ ପଛରେ ଗୋଡ଼ାଉଥିଲା, ସେ ଅଫିସରମାନେ ସୁରେନ୍ଦ୍ରର ଏସବୁ ପରିବର୍ତ୍ତନ ଦେଖି ବିସ୍ମିତ ନହୋଇ ରହି ପାରୁନାହାନ୍ତି । କୌଣସି ଲୋକ ତା' ବାଡ଼-ବଗିଚା ଦେଖି ଆସିଲେ ଖାଲି ହାତରେ ଫେରେ ନାହିଁ । ଫଳମୂଳ ଦୁଇଟି ନିଶ୍ଚେ ଧରିଯିବ ।

ଏବେ ଗାଁରେ ଗୀତା, ଭାଗବତପାଠ, ନାଚ, ପାଲା କିମ୍ବା ନ୍ୟାୟ ନିଷ୍ପତ୍ତି ହେଲେ ଗାଁଲୋକେ ସବୁଥିରେ ସୁରେନ୍ଦ୍ରକୁ ଲୋଡ଼ନ୍ତି । କେହି ଭଲମନ୍ଦରେ ପଡ଼ିଲେ, ସୁରେନ୍ଦ୍ର ଆଗ ଯାଇ ତାଙ୍କ ପାଖରେ ପହଞ୍ଚିବ । ତାର ସେବା ଓ ଯତ୍ନରେ ବ୍ୟବସ୍ଥା କରିବ ।

ସୁରେନ୍ଦ୍ରକୁ ସେ ଅଞ୍ଚଳରେ ସମସ୍ତ ଲୋକ ଜାଣିଲେ । ଶତ ମୁଖରେ ସୁରେନ୍ଦ୍ରର ପ୍ରଶଂସା ଖେଳି ଉଠିଲା । ପିତା ପୁତ୍ରର ଏ ପରିବର୍ତ୍ତନ ଦେଖି ନିଜକୁ ଧନ୍ୟ ମନେ କଲେ ।

---

# ଭାଇଜୀଉଁତିଆ



ବଣମୁଲକରେ ଗୋଟିଏ ଗାଁ । ଗାଁଟି ଛୋଟିଆ । ବାହାରୁ ଦେଖିଲେ ଲଟା ଝଟା ଭିତରେ ଗାଁଟି ଅଛି ବୋଲି କେହି କହିବେନି । ସେହି ଗାଁରେ ଥିଲେ ବୁଢ଼ା ଓ ବୁଢ଼ୀ ଦୁଇଟି । ଭଗବାନ ତାଙ୍କୁ କେଉଁଥିରେ ଊଣା କରି ନ ଥିଲେ । ତାଙ୍କର ସାତ ଏକର ଟାଙ୍ଗର ଜମି । ତା ସାଙ୍ଗକୁ ହଳ, ବଳଦ, ଗାଈ, ମଇଁଷି କେତେ କଅଣ । ବୁଢ଼ାବୁଢ଼ୀ ସୁଖରେ ଥାଆନ୍ତି । ଯୁଆନ ପୁଅ ସବୁ କାମକୁ ଆଗୁଆ । ଘରେ ଧନ ଦରବ

ଭର୍ତ୍ତି । ତଥାପି ବୁଢ଼ା ବୁଢ଼ୀଙ୍କ ମନରେ ସୁଖ ନଥାଏ । ଝିଅଟିଏ ବାହା ନ କଲେ, କାଲେ ସ୍ୱର୍ଗକୁ ବାଟ ଫିଟିବନି । ଝିଅଟିଏ ପାଇଁ ବୁଢ଼ାବୁଢ଼ୀ କେତେ ଓଷା, ଉପାସ କରୁଥାନ୍ତି । ବୟସ ଗଡ଼ିଗଲା ପରେ ତାଙ୍କର ଝିଅଟିଏ ହେଲା । ବେଶ୍ ଡଉଲ ଡାଉଲ । ବାପା, ମା'ଙ୍କର ଗୋଡ଼ ତଳେ ଲାଗୁ ନଥାଏ । ଅତି ଆଦରରେ ନା ଦେଲେ ତାର 'ସୁକୁମାରୀ' । ତାକୁ ବେଳେ ବେଳେ ଗେଲରେ 'ସୁକୁ' ବୋଲି ମଧ୍ୟ ଡାକନ୍ତି ।

ବାପା, ମା ଭାଇର ଆଦର ପାଇ 'ସୁକୁ' ଚନ୍ଦ୍ରକଳା ପରି ବଢ଼ିଲା । ଭାଇ ସାରାଦିନ ଖଟି ଖଟି ଘରକୁ ଆସିଲେ ପ୍ରଥମେ ଭଉଣୀକୁ ଖୋଜେ । ତା ସାଙ୍ଗରେ ହସ କଉତୁକ କରେ । ଚୁଟି ଭିଡ଼େ, ଚିଡ଼ାଏ, ଚଲାଏ । 'ସୁକୁ' ଅଭିମାନରେ ମୁହଁ ଫୁଲାଇ ବସିଲେ କେତେ ଗେଲ କରେ ।

ଏମିତି ଦିନ ଗଡ଼ି ଚାଲିଲା । କେତେବେଳେ 'ସୁକୁ'ର ବାହା ବୟସ ହୋଇ-ଗଲା, କେହି ଜାଣି ପାରିଲେ ନାହିଁ । ବାପା, ମା'ଙ୍କ ମନରେ ଛନକା ପଶିଲା । ଏତେ ଆଦରରେ ଝିଅକୁ ବଢ଼ାଇଛନ୍ତି । କିମିତି ମୁରୁଛି ପର ଘରକୁ ଛାଡ଼ିଦେବେ । ପର ଲୋକଙ୍କୁ ନିଜର କରି ସେ କିମିତି ଚଳିବ ? ତାର ଅଳି ଅର୍ଦ୍ଦଳି କିଏ ଶୁଣିବ ? ଆଜିଯାଏ ଯେ ଭାତ ଖାଇ ହାତ ଧୋଇ ଜାଣେନି, ସେ ଅଜଣା ଲୋକଙ୍କ ମେଳରେ ଘର କରିବ କିମିତି ?

ଝିଅକୁ ତ ବାହା ଦେବାକୁ ହେବ । ସେ ପରଘରୀ । ଝିଅ, ଘିଅ ଘରେ ରହିଲେ ଗନ୍ଧାଏ । ବାପା, ମା ବର ଖୋଜା ଚଳାଇଲେ । ଭାଗ୍ୟକୁ ଭଲ ପାତ୍ରଟିଏ ଯୁଟିଲା । ମାସ କେଇଟା ପରେ ଝିଅର ବାହାଘର ହେବ । ଏକଥା 'ସୁକୁ' ଜାଣିଲା ଦିନୁ ମନରେ ସୁଖ ନାହିଁ । ତାର ଛାତି ଦୁରୁ ଦୁରୁ ହେଲା । ତାର ଖିଆ ପିଆ କମିଗଲା । ବାପା, ମା, ଭାଇ, ସାଙ୍ଗ ସାଥୀ ଗାଁ ଭୂଇଁ ସବୁକୁ ଛାଡ଼ି ଅଜଣା, ଅଚିହ୍ନା ଗାଁରେ ଯାଇ କିମିତି ରହିବ, ଚଳିବ, କେତେ କଥା ତାର ଭାବନାରେ ଲାଖିରହିଲା । ମନେ ମନେ ତାର ଅନ୍ତର ଭିତରେ କୋହ ଭରିଯାଉଥାଏ ।

ଦିନେ କୋହ ସମ୍ଭାଳି ନ ପାରି 'ସୁକୁ' ବାପା, ମା ପାଖକୁ ଯାଇ ତାର ମନ କଥା ସବୁ କହିଲା "ମୋତେ ଏବେ ତୁମ୍ଭଙ୍କୁ, ଭାଇ ଭଉଣୀ, ସାଙ୍ଗସାଥୀ ସମସ୍ତଙ୍କୁ ଛାଡ଼ି ଚାଲିଯିବାକୁ ହେବ । ମୋ ପାଇଁ ଗାଁକୁ ଆସିବାର ବାଟ କରିଦେବନି ?" କାନ୍ଦି ପକାଇଲା ।

ବାପା, ମା' ଏସବୁ ଦେଖି ଶୁଣି ଝିଅକୁ ସ୍ନେହଦାନରୁ କପର ବଞ୍ଚିତ କର ଧରବେ, ଭାବ ଭାବ ତାଙ୍କର ମଧ୍ୟ କୋହ ଭର ଉଠିଲା । ହେଲେ କ'ଣ କରବେ; ଝିଅ ଜନମ ପରଘରକୁ । ମନ ମଧ୍ୟରେ କୋହ ଚାପିରଖି ଝିଅ ବବାହର ଯୋଗାଡ଼ ଯନ୍ତ୍ରରେ ରହଲେ ।

ବାପା, ମା ବଚାରକଲେ, ଝିଅ ଯାହା କହୁଛ ଠିକ୍ କଥା । ଝିଅର ଶାଶୁଘରୁ ବାପ ଘରକୁ ଆସିବାର ବାଟ ଯଦ ନ କରଦେବା ତେବେ ବାପା, ମା' ଭାଇଭଉଣୀ, ସାଙ୍ଗସାଥୀ ଗାଁ ଭୂଇଁକୁ ଭୁଲଯିବ । ପରସ୍ପର ଭକ୍ତ ସ୍ନେହ ଶ୍ରଦ୍ଧା ଲୋପ ପାଇଯିବ । ଏ ଦୁନଆଁରେ କଏ କାହାର ହୋଇ ରହବେ ନାହିଁ । ସମସ୍ତ ସମ୍ବନ୍ଧ ତୁଟିଯିବ । ସୁଖ ଦୁଃଖରେ କେହ କାହାର ସାହା ଭରସା ହେବେନାହିଁ । ହଂସା, ଦ୍ୱେଷ, କ୍ରୋଧ ଅହଂକାର ଲାଗି ରହବ ।

ବାପା' ମା, ଠିକ୍ କଲେ ଆଶ୍ୱିନ ମାସ ହେଉଛ ଠିକ୍ ସମୟ । ଗ୍ରୀଷ୍ମ ବାସ ସରଯାଇଥାଏ । କେଉଁଠି କମିତ ଧାନ ନୂଆ ନୂଆ ଅମଳ ହେଉଥାଏ । ଧନୀଠାରୁ ଗରୀବ ଯାଏ ସଭିଙ୍କର କଛ ନା କଛ ଖାଇବାର ହୋଇଯାଇଥାଏ । ପୁଣି ଏହ ମାସରେ ଶୁକ୍ଳପକ୍ଷ ସପ୍ତମୀରେ ଷଷ୍ଠୀ ଦେବୀ ଆୟୁର ଅଧିଷ୍ଠାତ୍ରୀଙ୍କ ଓଷା । ଏହ ସମୟରେ ଝିଅ ଶାଶୁଘରୁ ବାପଘରକୁ ଆସିବ । ଭାଇର ଦୀର୍ଘ ସୁସ୍ଥ ଜୀବନ ଯାପନ କାମନା କର ଓଷା ପାଳନ କରବ । ଏହାର ନାମ ହେବ 'ଭାଇ ଜୀଉନ୍ତିଆ ।' ସ୍ନେହ ଶ୍ରଦ୍ଧା ଆକ୍ଷୁର୍ଣ୍ଣ ହୋଇ ରହବ ।

ବୁଢ଼ା ବୁଢ଼ୀ ତାଙ୍କ ପୁଅ ଝିଅଙ୍କୁ ଡାକ ଏକଥା ଜଣାଇଦେଲେ । ପୁଅ ଝିଅ ଏକଥା ଶୁଣିଲାକ୍ଷଣି ପିତା ମାତାଙ୍କର ଗୋଡ଼ ତଳେ ପଡ଼ ନମସ୍କାର କଲେ । ଭାଇ ଭଉଣୀର ଆନନ୍ଦର ସୀମା କହଲେ ନସରେ । ଯାର କେତେ ଦନ ପରେ ବଧିବଧାନ ଅନୁସାରେ 'ସୁକୁ'ର ବାହାହେଲା । 'ସୁକୁ' କାନ୍ଦି କାନ୍ଦି ଶାଶୁ ଘରକୁ ଚାଲଗଲା ।

ଆଶ୍ୱିନ ମାସ ଆସିଲା । ଷଷ୍ଠୀ ଦେବୀଙ୍କର 'ଓଷା' କେତେ ଦନ ଆଗରୁ ଭାଇ ସୁକୁମାରୀକୁ ନେବାକୁ ଗଲା । 'ସୁକୁ' ବଡ଼ ଭାଇକୁ ଦେଖି ପାଣି ଲୋଟେ ଆଣି

ଭାଇର ଗୋଡ଼ ଧୋଇଦେଲା । ନମସ୍କାର କଲା । ବସିବାକୁ ଆସନ ଦେଲା । ଘରର ବାପା, ମା ସାଙ୍ଗ ସାଥୀ ସଭିଙ୍କର ଭଲ ମନ୍ଦ କଥା ପଚାରି ବୁଝିଲା । ଆନନ୍ଦରେ ତାର ଅଶ୍ରୁ ଝରି ପଡ଼ୁଥାଏ ।

ଶାଶୁଘରକୁ ଗଲାଦିନୁ ଭାଇ ସାଙ୍ଗରେ 'ସୁକୁ' ବାପଘରକୁ ପହିଲା ଆସିଲା । ତା'ର ଆସିବାର ଜାଣି ମାଧବୀ, ବିଶାଖା, ରେଣୁକା, ସୁସ୍ମିତା, ଅଞ୍ଜଳି, କଳ୍ପନା, ପ୍ରଭୃତି ଖୁସି ହୋଇ ଧାଇଁଗଲେ । 'ସୁକୁ'କୁ କେତେ କଥା ପଚାରିଲେ । ସୁକୁ ଟିକିଏ ଲାଜ ଲାଜ ହେଲା । ସଭିଏଁ ବସି କେତେ ଆଡ଼ୁ କେତେ କଥା ହୋଇ ହସ ଖୁସିରେ ମାତିଗଲେ ।

ଆଜି 'ସୁକୁମାରୀର' ଉପବାସର ଅଧିବାସ । ରାତିରେ ନାଚ, ପାଲା ହେବ । ଗାଁ ମଜଲିସ୍‌ରେ ସାଥୀମାନଙ୍କ ସହ ମିଶି ରାତିଟା ବିତାଇଲା । ପାହାନ୍ତିଆକୁ ଘରକୁ ଆସି ଚୂଡ଼ା, ଦହି, ଗୁଡ଼, କଦଳୀ ଚକଟି ଖାଇଲା । ଏହା ହେଲା ତାର ଉଠମନ ଖିଆ ।

ଆଜି 'ସୁକୁ'ର ଉପବାସ । ତା ସାଙ୍ଗରେ ଗାଁର ଝିଅମାନେ ମଧ୍ୟ ଏହି ବ୍ରତ ପାଳନ କରିବେ । ସେଥିପାଇଁ ତା'ର ମନରେ ଆନନ୍ଦ ଭରି ଉଠିଲା । ପିଲାଦିନେ ଗାଁ ମୁଣ୍ଡରେ ଥିବା ଯେଉଁ ଝଙ୍କା ବରଗଛ ମୂଳେ ଖେଳୁଥିଲେ ଆଜି ମଧ୍ୟ ସେ ସେଠାକୁ ଖେଳିବାକୁ ଗଲା । ସାଥୀମାନଙ୍କ ସହିତ ଖେଳ କୌତୁକରେ ସମୟ ଗଡ଼ି ଗଲା । କେହି ଜାଣି ପାରିଲେ ନାହିଁ ।

ରେଣୁକା, ମାଧବୀ, ବିଶାଖା, ସୁସ୍ମିତା ଆଦି ସମସ୍ତଙ୍କ ସାଥିରେ ଗାଧୋଇବାକୁ 'ସୁକୁମାରୀ' ଗଲା । ଗାଧୁଆ ପାଧୁଆ ସାରି ବନ୍ଧ ହିଡ଼ରେ ବାଲି ପିଣ୍ଡ କଲା । ତାରି ଉପରେ ତିନିଖଣ୍ଡ ସାନ ଶାଳ କାଠି ପୋତିଲା । ସୁକୁମାରୀ ଯାହା କରୁଥାଏ ତାର ସାଥୀମାନେ ମଧ୍ୟ ସେପରି କଲେ । ଏହି କାଠି ତିନି ଖଣ୍ଡିକୁ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଭାବରେ କଳ୍ପନା କଲା । ଏହି ତିନି ଠାକୁର ସଂସାରର ସୃଷ୍ଟିକର୍ତ୍ତା, ପାଳନକର୍ତ୍ତା, ଓ ଶାସନକର୍ତ୍ତା । ଏହି ଠାକୁର ମାନଙ୍କର ଅନୁଗ୍ରହ ଭାଇକୁ ମିଳିବା ପାଇଁ ମନ କାମନା କଲା । ଗାଧୋଇସାରି ଘରକୁ ଫେରିଲା ।

ବିଭିନ୍ନ ପ୍ରକାର ଫୁଲ, ଫଳ, କଷି ଅଁଳାଡାଳ ସଂଗ୍ରହ କଲା । ୧୦୮ଟି ଦୁବପତ୍ର ଶାଳ ପତ୍ରରେ ଗୁଡ଼େଇ ପୁଡ଼ା ବାନ୍ଧିଲା । ପୂଜାପାଇଁ ଖଇ, ଉଖୁଡ଼ା, ନଡ଼ିଆ, ଆଦି ଧରି ସନ୍ଧ୍ୟାରେ ଗାଁ ଭାଗବତ ଗୁଡ଼ି ଘରକୁ ଗଲା । ପୁରୋହିତ ଦୁର୍ଗାଙ୍କ ସାମନାରେ ଷଷ୍ଠୀଦେବୀଙ୍କ ଆସ୍ଥାନଟିଏ କଲେ । ଷଷ୍ଠୀଦେବୀଙ୍କର ଛବିଟିଏ ଆସ୍ଥାନ ଉପରେ ରଖିଲେ । ସୁକୁମାରୀ ପୂଜା ସାମଗ୍ରୀ ରଖି ବସିଗଲା । ପୁରୋହିତ ଯଥାବିଧିରେ ପୂଜା କରି 'ଭାଇ ଜୀଉନ୍ତିଆ' ବ୍ରତ କଥା ଶୁଣାଇଲେ । ସୁକୁମାରୀ ଭାଇର ଶୁଭକାମନା କରି ଦୀପଟିଏ ଦୁର୍ଗାଙ୍କ ପାଖରେ ଜାଳି ଥୋଇ ମୁଣ୍ଡିଆ ମାରି (ନତଜାନୁ ହୋଇ ନମସ୍କାର) ନେଇଥିବା ଫଳକଷି, ଅଁଳା ଡାଳ, ଦୁବ ଧରି ଘରକୁ ଫେରିଲା । ଏପରି ଭାବରେ ପବିତ୍ର ଅନ୍ତରରେ ନିର୍ଜଳା ଶୋଇ ରହିଲା ।

ଭୋରରୁ ଉଠି ପୁଣି ଷଷ୍ଠୀଦେବୀଙ୍କ ପାଖରୁ ଫେରାଇ ଆଣିଥିବା ସାମଗ୍ରୀ ଧରି ଗାଧୋଇବାକୁ ଗଲା ।

'ସୁକୁମାରୀ' ସଙ୍ଗରେ ଗାଁର ଉପବାସ କରିଥିବା ସମସ୍ତ ଝିଅମାନେ ମଧ୍ୟ ଗଲେ । ଗାଧୋଇସାରି ବାଲି ପିଣ୍ଡ ପାଖରେ ନେଇଥିବା ଫଳକଷି, ଅଁଳା ଡାଳ ଦୁବ ଥୋଇ ପୂଜାକଲା ।

ପୂଜାସାରି ପୁଣି ବନ୍ଧର ଆଣ୍ଠୁଏ ପାଣିରେ ଠିଆ ହେଲା । କହିଲା ମୋ ଭାଇକୁ ଷଷ୍ଠୀଦେବୀ ଦାଧଦନ ସୁଖରେ ରଖୁ ଷଷ୍ଠୀଦେବୀର ଫୁଲ ପ୍ରସାଦ ଖାଉଛୁ କହିଲା । ଗଜାମୁଗ ଗଜାବୁଟ କଚ୍ଛ ଦାନ ଦେଲା । ତାର ସାଥିମାନେ ମଧ୍ୟ ଏପରି କଲେ । ପରେ ବାଲି ପିଣ୍ଡକୁ ବିସର୍ଜନ ଦେଲା ।

ଘରକୁ ଆସି ପିଢ଼ାଟିଏ ଧୋଇ ଦେଲା । ଭାଇକୁ ନେଇ ତାରି ଉପରେ ଠିଆ କରାଇ ଗୋଡ଼ ଧୋଇ ଦେଲା । ଘରକୁ ଆଣି ଆସନ ଦେଇ ବସାଇଲା । ଫୁଲ ଚନ୍ଦନ ଦେଇ ଭାଇର କାନ୍ଧରେ ନୂଆ ଲୁଗା ଥୋଇ ଦେଲା । ଗୁଡ଼ା ହୋଇଥିବା ୧୦୮ଟି ଦୁବରେ ଭାଇର ଗୋଡ଼ରୁ ମୁଣ୍ଡଯାଏ ଆଉସି ଦେଇ କାନରେ ଖୋସି ଦେଲା । ଭାଇ ଭଉଣୀ ଏକାଠି ବସି ବିଭିନ୍ନ ପ୍ରକାର ପିଠାପଣା ଭୋଜନ କଲେ । ଏହିପରି

ମହା ଆନନ୍ଦରେ ପବିତ୍ର ଅନ୍ତରରେ 'ଭାଇ ଜୀଉନ୍ତିଆ ଓଷା' ପାଳନ କରି ଶେଷ କଲି । ଭାଇଭଉଣୀ ସ୍ନେହ ଶ୍ରଦ୍ଧା ଅତୁଟ ରହିଲି ।

ବ୍ରତ'ର କେତେଦିନ ମଧ୍ୟରେ ଜ୍ୱାଇଁ ଆସିଲେ । ସୁକୁମାରୀ ପୁଣି ତାର ଶାଶୁଘରକୁ ଗଲି । ଏହି ସମୟରେ ଭାଇ ଝିଅ ଜ୍ୱାଇଁ ପାଇଁ ନୂଆ ଲୁଗା ପିଠାପଣା କେତେ ଭାର ସମ୍ଭାର ଦେଇ ବିଦାୟ ଦେଲି । 'ଭାଇ ଜୀଉନ୍ତିଆ ବ୍ରତ'ର ଏହା ହେଲି ମୂଳ କଥା ।

ଏହି 'ଭାଇ ଜୀଉନ୍ତିଆ' କାହାଣୀ କୌଣସି ପୁରାଣ ଶାସ୍ତ୍ରରେ ବର୍ଣ୍ଣିତ ଥିବାର ଜଣା ନ ଗଲେ ମଧ୍ୟ ସାମାଜିକ ଚଳଣୀରେ ଏହାର ଯଥେଷ୍ଟ ଯଥାର୍ଥତା ରହିଛି । ଓଡ଼ିଶାର ପଶ୍ଚିମାଞ୍ଚଳ ସୁନ୍ଦରଗଡ଼, ସମ୍ବଲପୁର, ବଲାଙ୍ଗୀର ଜିଲାର ପ୍ରତି ପୁରପଲ୍ଲୀରେ ଏବେ ମଧ୍ୟ ଏହାର ପ୍ରଚଳନ ରହିଛି ।

---

# କରମା ପୂଜା



ବହୁତ ଦିନ ତଳର କଥା । ଗାଁ ନାଁ ସୁଆଡ଼ି । ବଣପାହାଡ଼ ନଈର ଘେର ଭିତରେ ଲୁଚି ରହିଥିଲା । ତାର ଭିତରେ ବାଘ, ଭାଲୁ, ହରିଣ । କେତେ ଜୀବଜନ୍ତୁ ପଲପଲ ହିଂସ୍ର ଜନ୍ତୁଙ୍କ ଭୟରେ ସେ ଗାଆଁକୁ କେହି ବାହାରୁ ଯିବାକୁ ସାହସ କରୁ ନ ଥିଲେ । ସେହି ଗାଁରେ ମାତ୍ର ପାଞ୍ଚ ଦଶଘର । ନିଜ ନିଜ ଭିତରେ ବେଶ୍ ସ୍ନେହ, ସହାନୁଭୂତି । ପର ଦୁଃଖରେ ଦୁଃଖୀ, ସୁଖରେ ସୁଖୀ ହୋଇ ବଣର ଫଲମୂଲ ଖାଇ ଦିନ କାଟୁଥିଲେ । ଦେବା ଦେବୀ ଉପରେ ଏମାନଙ୍କ ଢେର୍ ବିଶ୍ୱାସ ।

ମାଦ୍ରୀ'କାଳେ ଥିଲେ ଏହି ଗାଁର ମୁଖିଆ । ତାଙ୍କୁ କିଛି ନ ପଚାରି ସେହି ଗାଁର ଲୋକେ କିଛି କରୁ ନ ଥିଲେ ।

ମାଦ୍ରୀ'କାଲେଙ୍କର ଗୋଟିଏ ଝିଅ ଥିଲା ନା ତାର କାଜଳ। । କାଜଲା'କୁ ବେଳକାଳ ଜାଣି ବାହା କରି ପଠାଇ ଦେଲେ । ଏବେ ବୁଢ଼ାବୁଢ଼ୀ ଆଣ୍ଠୁ କୁଡ଼ା ପରି ବସି ରହିଲେ ।

ପୁଅଟିଏ ନ ଥିବାରୁ ବୁଢ଼ାବୁଢ଼ୀଙ୍କୁ ଦିନରେ ଭୋକ ନାହିଁ କି ରାତିରେ ନିଦ ନାହିଁ । ସବୁବେଳେ ଭାବୁଥାନ୍ତି ଆମ ପରେ ଏ ଘରର ସମ୍ପତ୍ତିର ଉତ୍ତରାଧିକାରୀ କିଏ ହେବ ? ହାତଗୋଡ଼ ପଡ଼ିଗଲେ କିଏ ସେବା ଯତ୍ନ କରିବ ? ଆମ ପିଣ୍ଡର ସଂସ୍କାର କିଏ କରିବ ? ଆମର ଗତି ମୁକ୍ତି ହେବ ନାହିଁ । ବଂଶ ବୁଡ଼ିଯିବ । ଏପରି କେତେ ଭାବନା କରି ଦୁଃଖ ଚିନ୍ତାରେ ଦିନ କାଟୁଥିଲେ । ପୁଅଟିଏ ପାଇଁ ବଣର କେତେ ଗଛତଳେ' ପଥର କୁଡ଼ାରେ ଦେବା ଦେବୀଙ୍କ ଆସ୍ଥାନ କହି ପୂଜା କଲେ । କୁକା (ଅଣ୍ଡିରା ଛେଳି) ବଳି ଦେଲେ । ଏହିପରି ବରାବର ଚଳେଇଲେ । ହେଲେ ମଧ୍ୟ କିଛି ହେଲାନି । ଦିନକୁ ଦିନ ବୁଢ଼ାବୁଢ଼ୀଙ୍କର ବୟସ ଗଡ଼ି ଯାଉଛି । ଏଥିପାଇଁ ଗାଁର ସମସ୍ତ ଲୋକଙ୍କ ମନରେ ମଧ୍ୟ ସୁଖ ନାହିଁ । 'ମାଦ୍ରୀ' ଥିଲେ ସମସ୍ତଙ୍କର ସାହାଯ୍ୟକାରୀ ।

ଏହିପରି କିଛିଦିନ ଗଲା ପରେ ଦିନେ ବୁଢ଼ାକୁ ସ୍ୱପ୍ନ ହେଲା । ତୁ କେତେ ନୀରିହ ଜୀବମାନଙ୍କର ଜୀବନ ନେଇ ପୁଅଟିଏ ପାଇବାର ଆଶା କରିଛୁ । କୌଣସି ଦେବତା କାହାର ଜୀବନ ଚାହାଁନ୍ତି ନି ଚାହାନ୍ତି କେବଳ ମନର ଦୃଢ଼ତା ଓ ଅନ୍ତରର ଭକ୍ତି । ତୁ ଯଦି ଏ ଦୁଇକଥା ଦେଇପାରିବୁ ତେବେ ତୋର ମନକାମନା ପୂର୍ଣ୍ଣ ହେବ । ମୁଁ ହେଉଛି କରମ୍ ଦେବତା । କରମା ଗଛ ହେଉଛି ମୋର ବାସସ୍ଥଳ । ତୁ ସେଇ ଗଛରୁ ଡାଳଟିଏ ନେଇ ପୂଜା କରି ମୋତେ ଖୁସି କରି ପାରିଲେ ପୁଅ ମୁଖ ଦେଖିବୁ ।

ବୁଢ଼ାର ନିଦ ଭାଙ୍ଗିଗଲା । ଖଟରୁ ଉଠି ବସିଗଲା । ବୁଢ଼ୀକୁ ଉଠାଇ ସ୍ୱପ୍ନ କଥା କହିଲା । ହେଲେ କଣ କରିବେ । ସେମାନେ ତ ଭୁତ ପ୍ରେତକୁ ବେଶୀ ବିଶ୍ୱାସ କରୁଥିଲେ । କିନ୍ତୁ ସ୍ୱପ୍ନରେ ଶୁଣିଛି ମନର ଦୃଢ଼ତା ଓ ଅନ୍ତରର ଭକ୍ତି । ଏକଥା ତା ମନରୁ ତଳେ ହେଲେ ପାଶୋରି ହେଲା ନାହିଁ । ସବୁବେଳେ "କରମ୍" ଦେବତାଙ୍କ କଥା ବୁଢ଼ା ଭାବିଲା ।

ଏବେ ବୁଢ଼ାବୁଢ଼ୀ ଠିକ୍ କଲେ । ସକାଳୁ ଗାଧୋଇ ଆସିଲେ । କରମା ଡାଳଟିଏ ଆଣିବାକୁ ଗଲେ । ଏତିକବେଳେ କରମ ଦେବତା ବୁଢ଼ାବୁଢ଼ୀଙ୍କର ମନର ଦୃଢ଼ତା ଓ ଭକ୍ତି ବଢ଼ିବା ପାଇଁ ସାପ ହୋଇ କରମା ଗଛରେ ଗୁଡ଼େଇ ହୋଇ ରହିଥିଲେ । କରମା ଗଛକୁ ଯାଇ ଦେଖନ୍ତିତ ସାପଟିଏ ଗୁଡ଼େଇହୋଇ ଫଁ ଫଁ କରୁଛି । ସାପର ଗର୍ଜନରେ ବୁଢ଼ାବୁଢ଼ୀଙ୍କର ଭୟରେ ପିଣ୍ଡରୁ ପ୍ରାଣ ଛାଡ଼ିଗଲା । ତଥାପି ପୁଅ ବିନା ବଞ୍ଚି ରହିଲେ ଯାହା ମଲେ ତାହା କହି ଜୀବନକୁ ପାଣି ଛଡ଼ାଇ କରମା ଡାଳଟିକୁ ଛୁଇଁବା ମାତ୍ରକେ ସାପଟି ଅଦୃଶ୍ୟ ହୋଇଗଲା । ପାଣି ପାଇଲେ ଦୁବ ଯେପରି ପଲ୍ଲବିତ ହୋଇ ଅଙ୍କୁରିତ ହୁଏ ସେହିପରି ବୁଢ଼ାବୁଢ଼ୀଙ୍କର ପ୍ରାଣ ଉଲ୍ଲସିତ ହୋଇ ଉଠିଲା ।

ବୁଢ଼ାବୁଢ଼ୀ ଖୁସିରେ ଡାଳଟିକୁ ଧରି ଘରକୁ ଫେରିଲେ । କରମା ପୂଜା ଦେଖି ଆସିବାକୁ ଗାଁମାନଙ୍କୁ ଚାରିଆଡ଼େ ଖବର ପଠାଇ ନିମନ୍ତ୍ରଣ କଲେ । କରମା ପୂଜା ନାମ ଶୁଣି ନୂଆ ଉତ୍ସବଟିଏ କମିତି ପାଳନ ହେବ ଭାବି ବହୁତ ଲୋକ ଦେଖିବାକୁ ଆସି ରୁଣ୍ଡ ହେଲେ । କେତେ ମାଦଳ କରତାଳ ଧରି ପହଞ୍ଚିଲେ । ସଂଧ୍ୟାରେ ଗାଁର ମଝିରେ କରମା ଡାଳଟିକୁ ପୋତାହେଲା । ବୁଢ଼ାବୁଢ଼ୀ ଦୁହେଁ ସେ ଡାଳଟିକୁ ଫୁଲ, ସିନ୍ଦୂର,, ଚନ୍ଦନ ନୂଆ ଲୁଗାରେ ସଜାଇ ଦେଇ ଧୂପ ଦୀପ ଦେଲେ । ଭକ୍ତିରେ ପ୍ରଣାମ କଲେ ପାଖରେ ରାତି ସାରା ଉଜାଗର ହୋଇ ବସି ରହିଲେ । ମଶାଲ ଜଳା ହେଲା । ଲୋକେ ମାଦଳ, କରତାଳ ବଜାଇ ମହା ଆନନ୍ଦରେ ନାଚ ଗାଇ ସାରା ରାତିଟି କଟେଇଲେ । ରାତ୍ରି ଶେଷରେ କାଲେଙ୍କର ପୁଅଟିଏ ହେଉ କହି ସମସ୍ତେ ଏକ ସ୍ୱରରେ ଆଶିଷ କଲେ । ଏବେ କରମା ଡାଳର ଭସାଣି ଉତ୍ସବ ପାଳିତ ହେବ । ଆଚମ୍ବିତ କଥା ପୋତା ଡାଳଟି ସେ ସ୍ଥାନରୁ ଯେତେ ଚେଷ୍ଟା କଲେ ମଧ୍ୟ ଉଠାଇ ଆଣି ପାରିଲେ ନାହିଁ । ତାହା ରାତିକ ଭିତରେ ଭୂଇଁରେ ଚେର ଧରିଗଲା । ଗଛରେ ପରିଣତ ହେଲା ।

ପାଞ୍ଚ ମୁଖରେ ଯାହା ଶୁଣାଯାଏ ତାହା ସତ୍ୟ ହୁଏ । ଏକଥା ବୁଢ଼ାବୁଢ଼ୀଙ୍କର ଦୃଢ଼ ବିଶ୍ୱାସ ରହିଥିଲା । ବୁଢ଼ାବୁଢ଼ୀ କହିଲେ, 'ଆମ୍ଭର ପୁଅଟିଏ ହେଲେ ପ୍ରତି ବର୍ଷ କରମା କରିବୁ' । ଏହାର ନାମ ହେବ କରମା ପୂଜା ।

ବର୍ଷକ ପରେ ବୁଢ଼ୀଙ୍କ ଗର୍ଭରୁ ପୁଅଟିଏ ଜାତ ହେଲା । ପୁଅ ପାଇ ବୁଢ଼ା ବୁଢ଼ୀ ବନ୍ଧୁବାନ୍ଧବ ଗାଁ ଲୋକଙ୍କର ଆନନ୍ଦର ସୀମା ରହିଲା ନାହିଁ । ବୁଢ଼ାବୁଢ଼ୀ କହିଲେ ଆମର ଘର କରଣା ହୋଇଗଲା । ପୁଅ ମୁହଁ ଦେଖିଲୁଁ । ବଂଶ ରହିଗଲା । ଆମର ଅନ୍ତେ ଘରର ଧନ ସଂପତ୍ତି ଜମିବାଡ଼ିର ଉତ୍ତରାଧିକାରୀ ହେବ । ବୁଢ଼ାବୁଢ଼ୀ ପୁଅକୁ ଅତି ଯତନରେ ବଢ଼ାଇଲେ । ତାକୁ ଉପଯୁକ୍ତ ଭାବରେ ଶିକ୍ଷାଦୀକ୍ଷା ଦେଇ ଗଢ଼ିଦେଲେ । ପୁଅ ବଡ଼ ହେଲାରୁ ବୁଢ଼ାବୁଢ଼ୀଙ୍କୁ ସେବା ଭକ୍ତି କଲା । ତାଙ୍କର ଜୀବଦ୍ଦଶାରେ ଦୁଃଖ କଷ୍ଟ କଣ ଜାଣି ପାରିଲେ ନାହିଁ । ବୁଢ଼ାବୁଢ଼ୀଙ୍କର ସୁଖରେ ଦିନ ସରିଗଲା ।

ଏହା ହେଉଛି ଆଶ୍ୱିନ ମାସର ଘଟଣା । ଏବେ ଏ କରମା ପୂଜା ଏହି ମାସରେ ସୁନ୍ଦରଗଡ଼ ଓ ସମ୍ବଲପୁରର ଗାଁ ମାନଙ୍କରେ ପାଳିତ ହେବାର ଦେଖାଯାଉଛି ।

ଏହାର ଆଉ ଗୋଟିଏ ଉପାଦେୟତା ଥିବାର ଅନୁମାନ ହୁଏ । ଏହି ସମୟରେ ଧାନ ଫୁଟୁଥାଏ । ଧାନରେ ପୋକ ବସି ଖାଇଯାନ୍ତି । ଏହାକୁ 'ବମା' ପୋକ କହନ୍ତି । କରମା ପୂଜା କଲାବେଳେ ମଶାଲ ଜଳା ହୁଏ । ଏଥିରେ ବହୁତ ପୋକ ମରିଥାନ୍ତି । ଫସଲକୁ ରକ୍ଷା କରାଯାଏ ।

ଆଜିର ଏ ବିଜ୍ଞାନ ଯୁଗରେ ଏ ଲୋକକଥା ହୁଏତ ପ୍ରହସନ ହୋଇପାରେ । କିନ୍ତୁ ଆଖି ଗଛରେ ପଣା ଲୁଚି ରହିଥିବା ଭଳି ଏଥିରେ ଉପାଦେୟତା ଅଛି କି ନା ବିଜ୍ଞ ସମାଜ ଅନୁଧ୍ୟାନ ଓ ଚିନ୍ତା କରିବେ ।

କଥାରେ ଅଛି ବିଶ୍ୱାସେ କୃଷ୍ଣ ପାଇ, ତର୍କେ ବହୁଦୂର— । ସାଧନାରେ ସବୁ ସିଦ୍ଧ ହୁଏ । ସାଧନାର ଅଭାବରେ ଜଗତର ହାସ୍ତ ଧର୍ମ, କର୍ମ, ମିଛ କହିଲେ ଭୁଲ ହେବ । ମନେହୁଏ ଏହା ଯଦି ସତ୍ୟ ହୋଇ ନ ଥାନ୍ତା ତେବେ ଏ ଦେଶ ଧର୍ମର ଦେଶ ବୋଲି ପୃଥିବୀରେ ପରିଚିତ ହୋଇ ନ ଥାନ୍ତ ଓ ଆମ ଏହି ଭାରତବର୍ଷରେ ପ୍ରତି ପୁରପଲ୍ଲୀ ଠାରୁ ଆରମ୍ଭ କରି ସହର ବିରାଟ ନଗରୀ ମଧ୍ୟରେ ଥିବା ଧର୍ମର ପୀଠସ୍ଥଳ କେତେ ଦିନରୁ ଲୋପ ପାଇ ଯାଆନ୍ତାଣି ।

---

# ସଂଶୋଧନ ତାଲିକା

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୧ | ୨ | ପରୁଣା | ପୁରୁଣା |
| ୨ | ୪ | ପଣ୍ଡତ | ପଣ୍ଡିତ |
| ୪ | ୧୮ | ଗରୁଜୀ | ଗୁରୁଜୀ |
| ୮ | ୧୯ | ବଡ଼ାଇଲେ | ବଡ଼ାଇଲେ |
| ୯ | ୫ | ଲେଖଛୁ | ଲେଖୁଛୁ |
| | ୧୭ | ଗମ୍ଭର | ଗମ୍ଭୀର |
| ୧୧ | ୧୩ | ଅଳସୁଅ | ଅଳସୁଆ |
| ୧୨ | ୪ | ଚଷ | ଚଷୁ |
| ୧୪ | ୯ | ଝଅ | ଝିଅ |
| ୧୬ | ୭ | ପଞ୍ଜା | ପଂଞ୍ଜା |
| | ୧୩ | ଜାନଯାତରା | ଯାନଯାତରା |
| | ୧୪ | ଓଦଟି | ଦଓଟି |
| | ୧୭ | ଚଛାଚଛା | ଛୁଛାଛୁଛା |
| | ୨୧ | ପରୁଣା | ପୁରୁଣା |
| ୧୭ | ୧୪ | ତଣ୍ଡ | ତୁଣ୍ଡ |
| | ୧୫ | ପଇବାକୁ | ପିଇବାକୁ |
| | ୨୪ | ଫଉଭର | ଫୁର |
| ୨୦ | ୬ | କୂଳ | କୁଳ |
| | ୭ | କୂଳ | କୁଳ |
| ୨୧ | ୨୧ | ଧୋଉଥାଉ | ଧୋଉଥାଇ |
| ୩୧ | ୧ | ଏଦେ | ଏବେ |
| ୩୪ | ୧୬ | ଆକ୍ଷୁଣ୍ଣ | ଅକ୍ଷୁଣ୍ଣ |
| | ୨୦ | ଆନନ୍ଦର ସୀମା କହ୍ବଲେ ନସରେ | ଆନନ୍ଦ କହ୍ବଲେ ନସରେ |
| ୩୫ | ୧୫ | ଗଡ଼ିଗଲା | ଗଡ଼ଗଲା |
| ୩୬ | ୧୬ | ଘାଦ୍ଦନ | ଘାର୍ଦ୍ଦନ |
| ୪୦ | ୧୧ | ଆସବାକୁ | ଆସିବାକୁ |

